# ବଚନ ଭୁନଈଁ

(ରାଜ୍ୟପାଳ ପୁରସ୍କାର ପ୍ରାପ୍ତ)

● ଲେଖକ—**ଆଶୁକବି ଶ୍ରୀ ଶଶୀଧର ଆଚାର୍ଯ୍ୟ**
ଗ୍ରାମ-ଜେମାଦେଈପୁର ଶାସନ
ପୋ-କନ୍ଦାଶପୁର, ଜିଲ୍ଲା-ନୟାଗଡ଼ ।

● ପ୍ରକାଶକ—**ଶ୍ରୀ ପ୍ରତାପଚନ୍ଦ୍ର ଆଚାର୍ଯ୍ୟ**

● ସହଯୋଗୀ—**ଶ୍ରୀ ସତ୍ୟବାଦୀ ମିଶ୍ର**, ଏମ୍.ଏ.,ବି.ଇଡ଼.
(ଶିକ୍ଷକ)

● ପ୍ରଥମ ସଂସ୍କରଣ—**୧୫ ଅଗଷ୍ଟ, ୧୯୯୩**

● ମୁଦ୍ରାକର—**ଶ୍ରୀ ଜଗନ୍ନାଥ ପ୍ରଧାନ**
ନୀଳାଚଳ ପ୍ରେସ୍, ନୟାଗଡ଼ ।

ମୂଲ୍ୟ ଟ୧୦-୫୦ପ.

# କୃତଜ୍ଞତା ଜ୍ଞାପନ

ଯେଉଁ ଗୁଣି ବ୍ୟକ୍ତିମାନେ ମୋର ସାଧନା ପଥରେ ଆଗେଇ ଯିବାରେ ପ୍ରେରଣା, ଉତ୍ସାହ ଏବଂ ସାହାଯ୍ୟ ପ୍ରଦାନ କରିଛନ୍ତି, ସେମାନଙ୍କ ନିକଟରେ ଗାନକବି ଶଶୀଧର କୃତଜ୍ଞତା ଜ୍ଞାପନ କରୁଛି ।

୧- ରଜା ଶ୍ରୀଯୁକ୍ତ ବ୍ରଜେନ୍ଦ୍ର କିଶୋର ସିଂହ ମାନଧାତା, ନୟାଗଡ଼

୨- ଶ୍ରୀଯୁକ୍ତ ଭଗବତ ବେହେରା, ଖାଦ୍ୟ ଓ ଯୋଗାଣ ମନ୍ତ୍ରୀ
ଓଡ଼ିଶା

୩- ଶ୍ରୀଯୁକ୍ତ ପ୍ରତାପ ପଟ୍ଟନାୟକ, ଭିକାଷ୍ଟ ମନ୍ତ୍ରୀ-ଖୋର୍ଦ୍ଧା ।

୪- ଶ୍ରୀଯୁକ୍ତ ବଟକୃଷ୍ଣ ଦାସ, P.W D, S.D.O ନୟାଗଡ଼

୫- ଶ୍ରୀଯୁକ୍ତ ରାଧାମୋହନ ମିଶ୍ର, ଜିଲ୍ଲା ପଶୁ ଚିକିତ୍ସା
ଅଧିକାରୀ-ଗଞ୍ଜାମ

୬- ଶ୍ରୀଯୁକ୍ତ ଗଙ୍ଗାଧର ମହାରଣା, ପ୍ରଧାନ ଶିକ୍ଷକ
ଏନ୍ ଏ.ସି. ହାଇସ୍କୁଲ, ନୟାଗଡ଼

୭- ଶ୍ରୀଯୁକ୍ତ ଜ୍ୟୋତିରଞ୍ଜନ ପଟ୍ଟନାୟକ, ଉପଖଣ୍ଡିସ୍ଥ
ପରିଚାଳକ, ଓଡ଼ିଶା ବନ ଉନ୍ନୟନ ନିଗମ, ନୟାଗଡ଼

୮- ଶ୍ରୀଯୁକ୍ତ ବିଧୁ ଭୂଷଣ ମିଶ୍ର, ନୟାଗଡ଼

୯- ଶ୍ରୀଯୁକ୍ତ ଜଗଦିଶ ଚନ୍ଦ୍ର ଷଡ଼ଙ୍ଗୀ,
ସବ୍ ଟ୍ରେଜେରୀ ଅଫିସର-ଖଣ୍ଡପଡ଼ା

୧୦- ଶ୍ରୀଯୁକ୍ତ ଆଶୁତୋଷ ପଟ୍ଟନାୟକ, ମ୍ୟାନେଜର
ନିଉଜନତା ଟେକ୍ସ, ନୟାଗଡ଼

୧୧- ଶେଖ୍ ମହମ୍ମଦ ସୋଲେମାନ, ଶିକ୍ଷକ ସିନ୍ଦୂରିଆ ।

# ଅଭିମତ

ଆଶୁକବି ଶ୍ରୀ ଶଶୀଧର ଆଚାର୍ଯ୍ୟ ନୟାଗଡ଼ର ଏକ ଜଣାଶୁଣା କବି ଓ ଏକ ଅମଳୀନ ପ୍ରତିଭା । ସେ ଓଡ଼ିଶାର ପୂର୍ବପର୍ଣ୍ଣରେ ସୁପରିଚିତ । ତାଙ୍କର ଲିଖିତ କେତେଗୋଟି କବିତା ଯଥା "ଚରିତ୍ର ଦୁନିଆଁ" "ମହାନ୍ ଓଡ଼ିଶା" "ଜମାପରିଚୟ" "କବିତା ରସାମୃତ" ଇତ୍ୟାଦି ପଠନ କଲି । କବି ନିଜର ସ୍ବୀୟ ସାଧନାବଳରେ ଲେଖନୀରୁ ନିସୃତ କରିଥିବା କବିତାର ଶୃଙ୍ଖଳା, ମାଧୁର୍ଯ୍ୟ, ଶୈଳୀ, ରୀତି ପଦବିନ୍ୟାସ ଅତ୍ୟନ୍ତ ସରଳ, ସାବଲୀଳ, ସୁଲଳିତ ହୋଇଥିବାରୁ ଏହା ମାଧ୍ୟମରେ ସେ ଗାୟକ, ଶିକ୍ଷକ ଓ ପାଠକ ସମସ୍ତଙ୍କ ହୃଦୟ ରାଜ୍ୟରେ ସାମ୍ରାଜ୍ୟ ବିସ୍ତାର କରିଛନ୍ତି । ତତ୍‌ସହିତ କବିଙ୍କ ରଚିତ କବିତାରେ ସମଗ୍ର ପୃଥିବୀର ସାହିତ୍ୟ, ଇତିହାସ, ଭୂଗୋଳ, ସଂସ୍କୃତି, ଧର୍ମ, ଶାସ୍ତ୍ର,ସାଧାରଣ ବିଜ୍ଞାନ ବିଷୟ ଗୁଡ଼ିକର ସଙ୍ଗମ ହୋଇଥିବାରୁ ଏହା ଆକାଶବାଣୀ ଓ ଦୂରଦର୍ଶନରେ ପ୍ରସ୍ତୁତି ଉପଯୋଗୀ ତୁଳନାତ୍ମକ ମାନଦୃଷ୍ଟିକୁ ଅଗ୍ରାଧିକାର ଭିତ୍ତିରେ ପୁରାତନ, ଆଧୁନିକ ଓ ଖଣ୍ଡ ଯୁଗୀୟ କବିମାନଙ୍କର କବିତାକୁ ଗବେଷଣା କରି ଏକ ଭିନ୍ନ ମିଶ୍ରିତ ଗୀତ କବିତା ପଠନରେ କବି ସିଦ୍ଧହସ୍ତ ଅତଏବ କବିଙ୍କର ଛନ୍ଦାତ୍ମକ ଅଭିବୃଦ୍ଧିରେ ପାରଦର୍ଶିତା ଅବର୍ଣ୍ଣନୀୟ ଧରଣୀରାଣୀର ଅମୂଲ୍ୟ ସମ୍ପଦର ମହିମା ବର୍ଣ୍ଣନା କରି ପଦ୍ୟାକାରରେ ପ୍ରାଚୀନ ଗୌରବକୁ କବି ଏଭଳି ଭାବେ ଲୋକ ଲୋଚନକୁ ଆଣି ପାରିଛନ୍ତି । ଯାହାକି ପୂର୍ବରୁ ସମ୍ଭବ ହୋଇନଥିଲା । କବିଙ୍କର ରଚନାବଳୀ ଗୁଡ଼ିକ ଉନ୍ନତ ଧରଣର ଏବଂ ଏହା ପୃଥିବୀର କିମ୍ବଦନ୍ତୀ,

ମହାପୁରୁଷ, ବରପୁତ୍ର ତଥା ନିର୍ମାତା ମାନଙ୍କର ଗୁଣ ବର୍ଣ୍ଣନା କରି ସୁଲଳିତ ଓ ମାଧୁର୍ଯ୍ୟ ପୂର୍ଣ୍ଣ ହୋଇଅଛି । ଏହା ଶିକ୍ଷାକ୍ଷେତ୍ରରେ ମଧ୍ୟ ଖୁବ୍ ଫଳପ୍ରଦ ହୋଇଉଠିଛି । ଏଭଳି ପ୍ରତିଭାଶାଳୀ କବିଙ୍କର ଜ୍ଞାନ ବିଜ୍ଞାନର ଗୋଟିଏ ଗନ୍ତାଘର । ଓଡ଼ିଶା ସରକାରଙ୍କ ଠାରୁ ସେ ପୁରସ୍କୃତ ହୋଇ ନୟାଗଡ଼ ରାଜାଙ୍କ ଠାରୁ ମଧ୍ୟ ଆଶୁକବି ଉପାଧି ଲାଭ କରିଛନ୍ତି । ଏଣୁ ତାଙ୍କୁ ଭଗବାନ୍ ଦୀର୍ଘାୟୁ ରଖିଥାନ୍ତୁ ଏତିକି ମୋହର ଶୁଭକାମନା ।

**ପୁରୁଷୋତ୍ତମ ପାଣି**
ଉପ ଜିଲ୍ଲାପାଳ, ନୟାଗଡ଼



# ସୂଚୀପତ୍ର

# ମା ଜଗଦ୍ଧାତ୍ରୀଙ୍କ-ବନ୍ଦନା

ସତ୍ୟଯୁଗେ ହୋଇଥିଲ ଜାତ ହିମାଳୟ କୋଳେମାତ
ନଗେନ୍ଦ୍ର ରାଜନନ୍ଦିନୀ ବିଶ୍ୱ ଉଦ୍ଧାର
ଜଗତମାତ ଅଭୟା ପ୍ରଳୟକାଳେ ମା ସାହା
ବ୍ରହ୍ମା, ବିଷ୍ଣୁ, ମହେଶ ତୋ ନାମ ସୁମର ।୧।
ମାଗୋ ଗିରି ଦୁହିତ...ଜଗଜ୍ଜନ ସଂହାରିଣୀ (ଘୋଷା)
ଘୋର ବିପଦୁ ତାରିଲୁ ବାନା ଭବେ ଉଡ଼ାଇଲୁ
ମଙ୍ଗଳମୟୀ ଜନନୀ କଲୁ ତୁ ପାର
ରାକ୍ଷସ ମାନଙ୍କୁ ନାଶି ଧରଣୀ ଭାର ଉଶ୍ୱାସୀ
ମୋହିନୀ ରୂପେ ମୋହିଲୁ ମହୀକ ପାଳ ।୨।
ଲଭିତୋର ଆଶିର୍ବାଦ ଧନ୍ୟହେଲ ନରପଦ
ଶାନ୍ତିସୁଖେ ହସିଉଠେ ଏ ମର୍ତ୍ତ୍ୟପୁରୀ
ବଜେ ମା ସିଂହ ବାହିନୀ ଭୁବ ସଂସାର କାରିଣୀ
ତୋନାମ ରାମ ସୁମର ସୀତା ଉଦ୍ଧାର ।୩।
କୋଟି ରତନେ ଶ୍ରୀଅଙ୍ଗ ବାଳ ସୂର୍ଯ୍ୟ ପ୍ରାୟ ରଙ୍ଗ
ଶୁଭଦା ବରଦାୟିନୀ ମଙ୍ଗଳକାରୀ
ଜନ ଜଗତ ସଂହାର ତୋ'ନାମ ରାମ ସୁମରି
ଲଙ୍କା ଜୟ କରିଥିଲେ ରାବଣ ମାରି ।୪।
ଖଣ୍ଡା ଖର୍ପର ଧାରିଣୀ ପାଳଅଛୁ ମା ଧରଣୀ
ଆତଙ୍କ କାଳରେ ମାତ ତୁ ରକ୍ଷାକାରୀ
ମାତ ଜଗତ ଜନନୀ ଅଭୟା ବର ଦାୟିନୀ
ଅଜାଡ଼ି ଦେଉଛୁ ମାତ ତୋ କୃପାବାରି ।୫।
ମହିଷାସୁର ମର୍ଦ୍ଦିନୀ ଦନୁଜ କୁଳ ନାଶିନୀ
ସୁନ୍ଦର ସଂସାରକୁ ମା' ହେଲୁ ଉଦ୍ଧାର
ପଙ୍କଜ ଲୋଚନୀ ତୁହି ଶୁଭ ଦୃଷ୍ଟିରେ ତୁ ଚାହିଁ
ଶଶି ପଦ ଧ୍ୟାୟେ ମାଗୋ ତୋ ଆଶ୍ରାକର ।୬। ●

# ସୃଷ୍ଟି ସର୍ଜନା

ରାଗ-ବୈରବୀ

ପ୍ରଳୟ କାଳେ ଜଳଧି ବସେ ମହାଯୋଗ ସାଧି
ଅନନ୍ତ କୋଳେ ଶୟନ କରନ୍ତି ହରି
କୋଟି କୋଟି କଳ୍ପଶେଷେ ବିଷ୍ଣୁଙ୍କ ନାଭି ପ୍ରଦେଶେ
ଜାତହୁଏ ସରସୀଜ ବାସ ପ୍ରସାରି
ପୁଣି ସହସ୍ର ଯୁଗଅନ୍ତେ
ପ୍ରସ୍ଫୁଟିତ ପୁଷ୍ପବୃନ୍ତେ ଅଜ ବସନ୍ତେ ।୧।
କଳ୍ପେ କଳ୍ପ ତହିଁ ରହି ଆଦିଅନ୍ତକୁ ନପାଇ
ଧ୍ୟାନ ବଳେ ଜ୍ଞାନେ ବିଷ୍ଣୁ ଦର୍ଶନ କଲେ
ସେ ଧ୍ୱନି ଶ୍ରବଣକରି ବ୍ରହ୍ମା ଚତୁର୍ମୁଖ ଧାରି
ନାଭି କମଳୁ ଆନନ୍ଦେ ଜାନୁ ଡୋଳିଲେ
ସ୍ତୁତିରେ ସେ ହୋଇ ସନ୍ତୋଷ
ବ୍ରହ୍ମାଙ୍କୁ ଦେଲେସେ ବିଷ୍ଣୁ ବହ୍ମତା ବେଶ ।୨।
ବ୍ରହ୍ମା ସେ ଆଦେଶ ଘେନ ଈଶ୍ୱରବେଦ ମନେ ଗୁଣି
ଅବନା ଅଷ୍ଟାକ୍ଷରକୁ ଜପି ଲାଗିଲେ
ଓଁକାର ବେଦ ଗାୟତ୍ରୀ କନ୍ୟାରୂପେ ଶ୍ରୀ ସାବିତ୍ରୀ
ସରସ୍ୱତୀ ତନୟରେ କାରଣୀ ହେଲେ
ଚଉଦପୁର ଶୂନ୍ୟଥିଲା
ସ୍ୱର୍ଗ ମର୍ତ୍ତ୍ୟ ପାତାଳଯେ ସ୍ଥିର ହୋଇଲା ।୩।
ନଥିଲେ ତପନ ଚନ୍ଦ୍ର ଅନଳ ପବନ ଇନ୍ଦ୍ର
ନଦୀ ବନ, ତରୁଲତା ପ୍ରାଣୀ ସକଳେ
ନଥିଲେ କୀଟ ପତଙ୍ଗ ମାନବ ପଶୁ ବିହଙ୍ଗ
ବ୍ରହ୍ମା ମହାମନ୍ତ୍ର ଜପି ସୃଷ୍ଟି ରଚିଲେ
ଧରଣୀ ଜୀବନ୍ତ ଲଭିଲା
ଭିଆଣ କଲେ ଚଉଦ ଭୁବନ ଲୀଳା ।୪।

ବ୍ରହ୍ମା ବ୍ରହ୍ମଦଣ୍ଡ ପୋତି                    ମେରୁ ଜାତକଲେ ଶନ୍ତ
ପାନୀର ଦ୍ୱାର ସଲ୍ଲିଳ ବାଜ ମଧ୍ୟରେ
ପୃଥିବୀ ନହୋଇ ସ୍ଥିର                    ତରଙ୍ଗେ ହୋଇ ଅସ୍ଥିର
ବ୍ରହ୍ମା ବେଦପାଠ କରି ରଖିଲେ ସ୍ଥିରେ
ଆଠଗୋଟି ଲୋମ ଉପାଡ଼ି
ଗୋଟି ଗୋଟି ରୋପିକଲେ ସେ ଅଷ୍ଟଗିରି ।୫।
ମଧୂକୈଟଭଙ୍କୁ ଜାତ                    କରି ବିଷ୍ଣୁ ତା ସହିତ
ମାରି ସାତଖଣ୍ଡ କରି ପକାଇ ଦେଲେ
ପ୍ରଳୟ କାଳେ ସଲିଳେ                    ଭାସି ସ୍ଥିର ନହେବାରେ
ବ୍ରହ୍ମା ବ୍ରହ୍ମଦଣ୍ଡ ଦୁଇଖଣ୍ଡ ପୋତିଲେ
ଉପର ଅଂଶ ମେରୁହେଲା
ପୋତି ହୋଇଥିବା ଅଂଶ ବ୍ରହ୍ମାଣ୍ଡ ହେଲା ।୬।

●

## ସୃଷ୍ଟିକାଳ ବର୍ଣ୍ଣନା

ରାଗ-ରସକୂଲ୍ୟା

ବିଷ୍ଣୁ ଆଦେଶେ ସୃଷ୍ଟି ରକ୍ଷାକରି
ବ୍ରହ୍ମା ବ୍ରହ୍ମାଣ୍ଡେ ହେଲେ ଅଧିକାରି
ଲୋମନେଇ ବିଷ୍ଣୁ ବ୍ରହ୍ମାଙ୍କୁ ଦେଲେ
ବ୍ରହ୍ମା ଦେଖିଣ ଆନନ୍ଦ ଲଭିଲେ ସେ
ସୃଷ୍ଟି ସର୍ଜ୍ଜନା ରଚିଲେ ଯେ
ଶାନ୍ତି, ମୈତ୍ରୀ, ପ୍ରୀତି ଜାଗରଣେ କ୍ଷିତି
ସତ୍ୟସଙ୍କଳ୍ପ ପାଳିଲେ ଯେ ।୧।

ବ୍ରହ୍ମା ବୈକୁଣ୍ଠ ପୁରୁ ବିଜେକରି
ଚୃତିଯୁଗ ଚୃରିବେଦ ସୁମସ୍ତ
ସତ୍ୟ ସତର ଲକ୍ଷ୍ୟ ଅଠାଇଶି
ସହସ୍ର ବର୍ଷ କଲେ ବ୍ରହ୍ମା କହି ସେ
ତ୍ରେତୟାକୁ ବାରଲକ୍ଷ୍ୟ ଯେ,
ଛୟାନବେ ସହସ୍ର ବର୍ଷ ପର୍ଯ୍ୟନ୍ତ
ଯୁଗକୁ କରିଲେ ଲକ୍ଷ୍ୟଯେ ।୨।

ଦ୍ୱାପର ଯୁଗ କଲେ ଆଠଲକ୍ଷ୍ୟ
ଚଉଷଠି ସହସ୍ର ବର୍ଷ ପାଖ
ବ୍ରହ୍ମା ଏପରି ସୃଷ୍ଟି କଲେ ବଶୁ
କଳି ଚୃରିଲକ୍ଷ୍ୟ ବତିଶିଶହସ୍ର ସେ
ବରଷରେ ଚୃରିଯୁଗ ଯେ
ଚୃରିଯୁଗ ମିଶି ଏକ ଗଣ୍ଡାହୁଏ
ସୃଷ୍ଟି ବିଧାନର ଭୋଗଯେ ।୩।

ଏକସ୍ତସ୍ତ ଗଣ୍ଡାରେ ଏକମନୁ
ଏକ କଳ୍ପରେ ଅଷ୍ଟାଦଶ ମନୁ
ମହା ଯୋଗ ସାଧି ମନ୍ତ୍ର ପଢ଼ିଣ
ସୂକ୍ଷ୍ମକରି ସୃଷ୍ଟି କଲେ ଭିଆଣ ସେ
ପୃଥିବୀ ବ୍ରହ୍ମ ପ୍ରଳୟ ଯେ
ସୁମେରୁ ଚେର ପାବନ୍ତ ପାଣି ଉଠେ
ଲହସ୍ତ ବଳେ ଅଥୟ ଯେ ।୪।

ଆଠଗୋଟି ଲୋମ ବ୍ରହ୍ମା ଉପାଡ଼
ପୋଣ୍ଠ ନାମଦେଲେ ମନ୍ଦରଗିରି
ପାରିପାଝ ଗିରି ଦ୍ୱିତୀୟ ନାମ
ମହେନ୍ଦ୍ର ଗିରି ଯେ ତୃତୀୟ ନାମ
ବିନ୍ଧ୍ୟଗିରି ଚତୁର୍ଥରେ ଯେ
ପଞ୍ଚମରେ ନାମ ଦେଲେ ମାଲ୍ୟବାନ
ସୁପାରିଶକୁ ଷଷ୍ଠରେ ହେ ।୫।

ହେମବାନ ଗିରି ନାମ ସପ୍ତମେ
ପଶ୍ଚିମ ବିନ୍ଧ୍ୟକୁ ଦେଲେ ଅଷ୍ଟମେ
ବ୍ରହ୍ମା ଜାତ କରିଲେ ଅଷ୍ଟଗିରି
ବ୍ରହ୍ମଦଣ୍ଡ ପୋଣ୍ଠ ସୃଷ୍ଟିକୁ ଗତି ଯେ
ଚତୁର୍ଦ୍ଦଶ ବ୍ରହ୍ମାଣ୍ଡକୁ ଯେ
କୋଟି କୋଟି ଜିବ ସରଜ ପାଳଲେ
ଜୀବନ୍ତ କଲେ ଧରାକୁ ଯେ ।୬



## ଗୁରୁ ଅବତାର

ଜଗତେ ଯା ଲୀଳା କରୁଅଛୁ ଖେଳା
ସ୍ୱୟଂ ନାରାୟଣ ଚୁପି
ସତ୍ୟଯୁଗେ ହରି ବିପ୍ର ରୂପଧରି
ବଳିକି ଛାଡିଲେ ଚୁପି ।୧।

ତ୍ରେତୟା ଯୁଗରେ ରାମ ଅବତାରେ
ବିନାଶିଲ ଦଶାନନ
ଦ୍ୱାପର ଯୁଗରେ କୃଷ୍ଣ ଅବତାରେ
କଂସକୁ କଲ ନିଧନ ।୨।

କଳିଯୁଗେ ହରି ବିଜେ ନୀଳଗିରି
ସ୍ୱୟଂ ଦାରୁବ୍ରହ୍ମ ରୂପେ
ବିଭିନ୍ନ ଯୁଗରେ ଭିନ୍ନ ଅବତାରେ
ଲୀଳା ପ୍ରକାଶିଛ ଆପେ ।୩।

ରଚି ତ୍ରିଭୁବନ ପ୍ରଭୁ ନାରାୟଣ
ସୃଷ୍ଟିର ହିତ କାରଣେ
ବିଷ୍ଣୁ ରସାମୃତ ପାନକରି ଶଶୀ
ବନ୍ଦଇ ପଦ୍ମ ଚରଣେ ।୪।



## -ସ୍ତୁତି-

ଜଗତ କରତା ପ୍ରଭୁ ଶଙ୍ଖ ଚକ୍ର ଧାରୀ
ପୃଥିବୀର ଭାର ଉଦ୍ଧାରିଲ ଦଇତାରୀ ॥
ସତ୍ୟ ଯୁଗରେ ଶ୍ରୀନରସିଂହ ରୂପଧରି
ହିରଣ୍ୟ ବିଦାରି ପ୍ରହଲ୍ଲାଦକୁ ଉଦ୍ଧାରୀ ॥
ତ୍ରେତୟାରେ ରାମଚନ୍ଦ୍ର ରୂପେ ଅବତରି
ଧରା ଉଶ୍ୱାସିଲ ପ୍ରଭୁ ଦୈତ୍ୟ ନାଶକରି ॥
ବାଲ୍ୟ କାଳରେ ବଧିଲ ତାଡକା ରାକ୍ଷସୀ
ଉଦ୍ଧାରିଲ ବଇଦେହୀ ଦଶାନନ ନାଶି ॥
ଦ୍ୱାପର ଯୁଗରେ ଅବତାର ମଧୁପୁରେ
ବସୁଦେବ ଲୁଚାଇଲ ନେଇ ନନ୍ଦ ଘରେ ॥
ଅଷ୍ଟବର୍ଷ ବୟସେ ଯୋଗେ ରହି ନାରାୟଣ
ଅଭିଶାପରୁ ମୁକତ କଲ ପାପୀଜନ ॥
ଦ୍ୱାରକାରେ ଲୁଚିଲୁ ତୁ କୋଳୁଆର ଭୟେ
ବହୁକାଳ ରହିଲୁ ତୁ ଆନନ୍ଦ ଆଳୟେ ॥
କୁରୁବଂଶ ଧ୍ୱଂସକରି ପ୍ରଭୁ ହୃଷିକେଶ
ଲଭିଲ ଅମରଯଶ ବଧକରି କଂସ ॥
କଳିଯୁଗେ ବିଜେହେଲ ଶ୍ରୀ ନୀଳକନ୍ଦରେ
ଦାରୁବ୍ରହ୍ମ ରୂପେ ପୂଜା କରିଲେ ସକଳେ ॥
ଭକତବତ୍ସଳ ନାମ ଅଟଇ ତୋହର
କଳିଯୁଗେ ଅବତାର ହେଲୁ ଚକ୍ରଧର ॥
ବନ୍ଦଇ ଶ୍ରୀ ଶଶୀଧର ପ୍ରଭୁ କୃପାବଳେ
ଲେଖିଅଛୁ ଯା ଦଶଇ ଅନ୍ତର ମଧ୍ୟରେ ॥



## ମା ଧରିତ୍ରୀ

ଧରଣୀ ରାଣୀ ମା' ଶୋଭାର ଭଣ୍ଡାର
ହସେ ଚନ୍ଦ୍ର ସୂର୍ଯ୍ୟ ତାର
ମଥାର ଅଞ୍ଚଳ ନଦୀବନ ଗିରି
ସାଗର ଦୁଃଖ ପାଶୋରା ।୧।

ତୋ ପବିତ୍ର କୋଳେ ଖେଳିଛନ୍ତି ବଳେ
ନିଜେ ଜଗତର ସାଇଁ
ଶ୍ରୀମନ୍ଦିରେ ରହି ଲୀଳା କରୁଛନ୍ତି
ଜଗତ କଲ୍ୟାଣ ପାଇଁ ।୨।

କେତେ ଜନପଦ ନଦୀ ପର୍ବତ
ଭିନ୍ନ ଭିନ୍ନ ଜୀବ ଜନ୍ତୁ
ବିଭିନ୍ନ ସ୍ଥାନରେ ଶୋଭା ବୃଦ୍ଧି କରେ
ବନ ଜଳାଶୟ ସେତୁ ।୩।

ଅପୂର୍ବ ଶୋଭା ଦେଖି ମନ ଲୋଭା
ହୃଦୟ ପଡ଼େ ଉଛୁଳି
ଋତୁ ଛଅ ରଙ୍ଗ ବିବିଧ ବିହଙ୍ଗ
ଶୋଭେ ତୋର ବକ୍ଷ ସ୍ଥଳୀ ।୪।

ଧନୀ ମାନୀ ଜ୍ଞାନୀ ଗୁଣୀ ତୋ ସନ୍ତାନେ
ଗଉରବେ ନାହିଁ ସୀମା
ତୋ ପବିତ୍ର ହୃଦ କରନ୍ତି ଆନନ୍ଦ
କବି କି ଦେବ ଉପମା ।୫।

ଅତୀତ ଭାରତ ଘୋଷନ୍ତି ସରବେ
ବର୍ଣ୍ଣିତୋ ଋତୁ ମାଧୁର୍ଯ୍ୟ
କାଳ କାଳ ଭୂମି ତୋ ସୁତା ସୁତଙ୍କୁ
ଦେଉ ଶୁଭାଶୀଷ ଢାଳ ।୬।



## ବିଚିତ୍ର ଜଗତ

ରାଗ-ରାମକେରୀ

ଆହା କି ବିଶାଳ ସଂସାର ଦିଶେ କି ମନୋହର
ପ୍ରକୃତି ରାଣୀର ସୌନ୍ଦର୍ଯ୍ୟ କି ବିଚିତ୍ର ପ୍ରକାର
କୋଟି କୋଟି ପ୍ରାଣୀ ଆନନ୍ଦେ ଧରି ଅଛୁ ମା କୋଳେ
ଅତି ଯତନରେ ପାଳୁଛୁ ମାତ ହରଷ ଭୋଳେ
ତପନ କିରଣ ବିରାଜେ ତୋର ଏକ ପାର୍ଶ୍ୱରେ
ଅନ୍ଧକାର ଘୋଟି ଆସଇ ଆର ପାଖ ପ୍ରାନ୍ତରେ
ଘୂରୁଅଛି ଏହି ପୃଥିବୀ ସୂର୍ଯ୍ୟ ଚତୁର୍ଦ୍ଦିଗରେ
ଦିବସ ରଜନୀ ହେଉଛି ବିଶ୍ୱବିଧି ଯୋଗରେ
କେଡ଼େ ଅଦ୍ଭୁତ ପୃଥିବୀ ଘୂରୁଅଛି ଶୂନ୍ୟରେ
ମହାମ୍ବୁଧି ନୀଳ ତରଙ୍ଗେ ପଦ ଧଉତ କରେ
କେତେ ନଦ ନଦୀ ବହୁଛନ୍ତି ମାତ ତୋର ବକ୍ଷରେ
ଅନନ୍ତ ଗଗନ ବିରାଜେ ତୋର ଶୋଭା ଲକ୍ଷରେ
ତରୁଲତା ପୁଷ୍ପ ଫଳରେ ହୋଇଛୁ ବିମଣ୍ଡିତ
କୋଟି କୋଟି ପ୍ରାଣୀମାନଙ୍କୁ କରିଅଛୁ ମା ଜାତ
ଭାସ୍କର କିରଣେ ଉତପ୍ତ ପବନ ଜଳରେ ସିକ୍ତ
ଚପଳା ଜ୍ୟୋତିରେ ଉଜ୍ଜ୍ୱଳ ବଜ୍ରନାଦରେ ଭୀତ
ଅନଳରେ ଦଗ୍ଧହୋଇ ମା' ପୁଣି ବହେ ମହୁତ
ଅନିଳ ବହୁଲେ ଶରୀର ତୋର ହୁଅଇ ସିତ
କେତେ ଯୁଦ୍ଧ ଘନ ଘଟା ମା' ଘଟୁଅଛି ତୋ ପୁରେ
କେତେ କେତେ ବୀର ଜବାନ ଗଲେ ମୃତ୍ୟୁ ମୁଖରେ
ଧନ୍ୟ ପ୍ରଭୁ ବିଶ୍ୱପତି ହେ ଧନ୍ୟ ସୃଷ୍ଟି ତୁମ୍ଭର
କି ବର୍ଣ୍ଣିବି ଗୁଣୀ ତୁମର ଏ ବିଚିତ୍ର ସଂସାର ।

---

# ଧରଣୀ ରାଣୀର ଶୋଭା

ରାଗ-ରସକୂଲ୍ୟା

ଧନ୍ୟ ଧନ୍ୟ ଜନନୀ ବସୁମତୀ
ତୋ ଠାରୁ ଜାତ କେତେ ଭାଗ୍ୟବନ୍ତୀ
ପଶୁ, ପକ୍ଷୀ, ନଦୀ, ହ୍ରଦ, କନ୍ଦର
ପୂର୍ଣ୍ଣମୟ ସିନ୍ଧୁ ଖେଳେ ସୁନ୍ଦର ଯେ
ଧରି ସୂତାସୁତ କୋଳେ ଯେ
ଫଳ ମୂଳ ଜଳ କରନ୍ତି ଆହାର
ସୃଷ୍ଟି କରନ୍ତି ବିହାର ଯେ ।୧।
ଧନ୍ୟ ମହତ୍ତ୍ୱ ଗୁଣ ସର୍ବସ୍ୱତା
କେତେ ଭାର ବହୁଛୁ ଆଦମାତା
କୋଟି କୋଟି ସୁତସୁତାଙ୍କ ଅନ୍ନ
ବୁଝୁଛୁ ତୁହି ମା ମମତା ତାନ ଯେ
ତୋ ସ୍ନେହ ଅକ୍ଷୟ ଧାର ଯେ
ଦେବାଲୋକ ପରି ସ୍ୱଚ୍ଛତୋ ଅନ୍ତର
କରେ ମୁଗ୍ଧ ନରନ୍ତର ଯେ ।୨।
ଧନ୍ୟ ଧନ୍ୟ ଧରଣୀ ସୁହୃଦୟା
ଦେଖୁଥିଲେ ଲାଗଇ ନୂଆ ନୂଆ
ଗଙ୍ଗା ଗୋଦାବରୀ ହୃଦେ ଶୋଭିତ
ତୋ ଗରଭୁ ଦେବା ଦେବୀ ସମ୍ଭୂତ ଯେ
ଆଦରେ ପାଳନ୍ତୁ ଧରି ଯେ
କୁହୁକୁହୁ ତାନେ ନୃତ୍ୟ କରି କରି
ବନ୍ଦାଏ ସିନ୍ଧୁ ଲହରୀ ଯେ ।୩।

ରାମ ସୀତାଙ୍କୁ ଅଗ୍ନି ପରଖିଲେ
ତୋ କୋଳେ ସୀତା ଶରଣ ପଶିଲେ
କୋଳ କରନେଇ ଦେଲୁ ମା ସ୍ଥାନ
ଆଦରେ ଯେବେ କଲୁ ପ୍ରସ୍ଥାନ ସେ
କୋଳେ ଆଲିଙ୍ଗନ କରି ଯେ
ପାଳିଅଛୁ ବସୁନ୍ଧରା ସେ ଦମୟନ୍ତୀ
ଯାତ ସୀତା ସୁକୁମାରୀ ଯେ ।୪।

ଜଳ ସ୍ଥଳ ମାତ ହ୍ରଦ ତୋହର
ବକ୍ଷ ବଦାରିଲେ ନାହିଁ ଖାତର
ଶୀତ ବରଷା ତୋ ଅଙ୍ଗ ଭୂଷଣ
ଗୃହ ଅଟ୍ଟାଳିକା ଗିରିକାନନ ସେ
ସମସ୍ତଙ୍କ ଭାର ଧରି ଯେ
କେତେ ଭାର ସହି ନୋହୁ ତୁ କାତର
ସର୍ବଂ ସହା ନାମ ଧରି ଯେ ।୫।

ସର୍ବଗୁଣେ ଶ୍ରେଷ୍ଠ ମାତ ଜଗତେ
ପୂଜା କରନ୍ତି ତୋ ପାଦେ ସମସ୍ତେ
ସୁଧା, ଧାର ତୋର ଅନ୍ତର ପୂରି
ଦେବେ ଧନରତ୍ନ ରଖିଛୁ ଭରି ସେ
କୃଷି ଶିଳ୍ପରେ ଉଜ୍ଜ୍ୱଳ ଯେ
ତୋର ପାଦପଦ୍ମେ କରଇ ଜୁହାର
ଆଶୁକବି ଶଶୀଧର ଯେ ।୬।



## ଧରଣୀ ବନ୍ଦନା

ବନ୍ଦଇ ଶ୍ରୀ ବସୁମତୀ ତୋର ପଦ୍ମପାଦେ
ତେତିଶ କୋଟି ଦେବତା ଯେନ ତୁ ସଙ୍ଗତେ
ତୋର କଳ୍ପନାରୁ ହେଲା ଏ ବ୍ରହ୍ମାଣ୍ଡ ଜାତ
ସୃଷ୍ଟି ସର୍ଜନା ଆରମ୍ଭେ ହୋଇଲୁ ସମ୍ଭୂତ ।୧।

ସ୍ନେହମୟୀ ଜନନୀ ଗୋ ଗଢ଼ିଲୁ ସଂସାର
ସର୍ବେଏଁ କରନ୍ତି ସେବା, ପୂଜା ତୋ ପୟର
କୋଳେ ପାଳିଲୁ ସର୍ବଦା ଧରି ତୁ ଜନନୀ
ତୋ ଗର୍ଭୁ ଜାତହୋଇଲେ କୋଟିକୋଟି ପ୍ରାଣୀ।୨।

ସାଗର, ତରଙ୍ଗ ଯୋଷେ ତୋର ଘଣ କାନ୍ତି
ତୋଳେ ବଢାଇ ଭୁଞ୍ଜାଇ ପାଳିଲୁ ସନ୍ତତି
କୋଟି କୋଟି ପଶୁପକ୍ଷୀ ଧରି ତୋର କୋଳେ
ଯୁଗ ଯୁଗ ଧରି ବଞ୍ଚାଇଛୁ ତୁ ସକଳେ ।୩।

ତୋପୃଷ୍ଠେ ସମସ୍ତେ ସଦା କରନ୍ତି ବିହାର
ତୋ ଦୟାରୁ ଅନ୍ନ ଜଳ କରନ୍ତି ଆହାର
ସରବେ ସମାନ ତୋର କୋମଳ ହୃଦୟେ
ଝଡ଼ଝଞ୍ଜା ସହୁଅଛୁ ପାଷାଣ ପରାୟେ ।୪।

ସ୍ନେହଭରେ ପାଳମାତ ସର୍ବଙ୍କୁ ସୁତନ୍ତେ
ଅଳଙ୍ଖଳ କ ଆନନ୍ଦେ ନବାଧଇ ତୋତେ
ଧନ୍ୟତୋ ମହତ ଗୁଣ ସହନଶୀଳତା
ସ୍ୱଚ୍ଛ ହୃଦୟ ତୋହର ନାହିଁ ଆବିଳତା ।୫।

ସୁତସୁତା ଉପକାର ପାଇଁ ପ୍ରାଣେତାଳ
ପାଳନ୍ତୁ ସ୍ନେହେ ସନ୍ତାନ ମାଠାରୁ ବଳି
କେତେ ବୀର ଯୋଗ୍ୟପୁତ୍ର ତୋ ଗର୍ଭରୁ ଜାତ
ତୋ କୋଳରୁ ଜନ୍ମଲଭି ବ୍ରହ୍ମାଣ୍ଡେ ବିଖ୍ୟାତ ।୬।

ପବିତ୍ର ହୃଦୟ ପୂର୍ଣ୍ଣ ସୁଗୁଣେ ସକଳ
କେତେଶତ ଲଭିଦେହେ ପାହାଡ଼ କନ୍ଦର
ତୋ ଗର୍ଭୁ ସମ୍ଭୂତହେଲେ ଜଗତ୍ ମାତ ସୀତା
ମହାସତୀ ଭାଗ୍ୟବତୀ ସୁ ଗୁଣେ ଭୂଷିତା ।୭।

ଯେତେବେଳେ ରାମ ଅଗ୍ନି ପରୀକ୍ଷା କରିଲେ
ଅପମାନେ ବଇଦେହୀ ତୋଗର୍ଭେ ପଶିଲେ
ବକ୍ଷମେଲି ଆଦରେଲୁ କରି ଆଲିଙ୍ଗନ
ସ୍ନେହଭରେ କୋଳକରି ଦେଲୁ ତୁ ଆସ୍ଥାନ ।୮।

ପ୍ରାଣଠାରୁ ବଳିକଲୁ ଅଧିକ ଶଙ୍ଖାଳୀ
ତୋର ସ୍ନେହ ଶାନ୍ତିଲଭି ରହିଲେ ସୁନ୍ଦରୀ
ଜୟଜୟ ବସୁମତୀ ତୁ କଲ୍ୟାଣମୟୀ
ସର୍ବଦା ସକଳ ଦ୍ରବ୍ୟ ଦେଉଥାଉ ତୁହି ।୯।

ତ୍ରିଭୁବନେ ସମନାହିଁ ଗୁଣକେ ବର୍ଣ୍ଣିବ
ତୋ ଆଶୀଷ ଲଭି ଶଶୀ ନିସ୍ତାର ଲଭିବ ।୧୦।

—o—

## ବିଶେଷ ବିବିଧ ସୂଚନା

(ରାଗ- ରସକୁଲ୍ୟା)

ଲମ୍ବୋଦର ଗଜାନନ ଗଣେଶ
ତ୍ରୀଗୁଣ ସତ୍ତ୍ୱ, ରଜ, ତମ, ଯଶ
ତ୍ରୀଲୋଚନ ଅଟନ୍ତି ମହାଦେବ
ବେଦ, ଋକ୍, ଯଜୁ, ସ୍ୟାମ, ଅଥର୍ବ
ଧର୍ମ, ଅର୍ଥ, କାମ ମୋକ୍ଷ ଯେ
ବାଲ୍ୟ ଯୌବନ ପ୍ରୌଢ଼ ବାର୍ଦ୍ଧକ୍ୟ
ଚଉ ଅବସ୍ଥାକୁ ଦେଖ ଯେ ॥

ନୀଳାଚଳ ରାମେଶ୍ୱର ଦ୍ୱାରକା
ବଦ୍ରି ଚାରିଧାମ ଜଗତେ ଡଙ୍କା
ସତ୍ୟ ତ୍ରେତୟା ଦ୍ୱାପର ଯେ କଳି
ଚାରିଯୁଗ ବ୍ରହ୍ମା ଅଛନ୍ତି ଗଢ଼ି ସେ
ପୃଥିବୀର ଶକ୍ତି ଧରି ଯେ
ପଞ୍ଚ ମହାଭୂତ ସମୀର ସଲିଳ
ଆକାଶ ରହିଛି ପୁରି ଯେ ॥

ହୀରା ନୀଳା ମୋତି ମୁକ୍ତା ପୋହଳା
ପଞ୍ଚରତ୍ନ ପୁଣି ରହିଛି ଧରା
ଧାନ୍ୟ ମୁଗ ବରି ରାଶି ତଣ୍ଡୁଳ
ଦୁଧ ଦହି ଘୃତ ଶସ୍ୟ ଗୋବର
ପଞ୍ଚଗବ୍ୟ ଯେ ଗୋମୂତ୍ର ଯେ
ଦୁଧ ଦହି ଘୃତ ଗୁଡ଼ ମହୁ ଯୁକ୍ତ
ମିଶି ହୁଏ ପଞ୍ଚାମୃତ ଯେ ॥

ଆମ୍ର, ଜର, ଓସ୍ତ ବଟ ଅଶୋକ
ପଞ୍ଚ ପଲ୍ଲବେ କର ଯୋଗାଯୋଗ
ଷଡ଼ଋତୁ ଗ୍ରୀଷ୍ମ, ବର୍ଷା ଶରତ
ଏପର ହେମନ୍ତ ଶୀତ ବସନ୍ତ ସେ
ଷଡ଼ରିପୁ କାମ କ୍ରୋଧ ଯେ
ମୋହ, ମାୟା, ମଦ, ମତ୍ସ୍ୟ ଲଭିଅଛୁ
ଧାଣପକେ ମନ ନେଇ ଯେ ॥

ଯଜନ ଯାଜନ ଯେ ଅଧ୍ୟୟନ
ଦାନ ଅଧ୍ୟାପନ ପରଗ୍ରହଣ
ଷଟ୍ କର୍ମରେ ଜପମାନ କର
ଷଡ଼ମୁଖ କାର୍ତ୍ତିକେୟ ସୁମର
ପଞ୍ଚ ଇନ୍ଦ୍ରିୟଙ୍କୁ ଧର ଯେ
ନାସା କର୍ଣ୍ଣ ଚକ୍ଷୁ ଜିହ୍ୱା ଚରମକୁ
ବେଢ଼ି ରହିଅଛୁ ଶେଷ ଯେ ।॥

ବାଇଗିଣୀ ନେଳ ନୀଳ ସବୁଜ
ନାଲ ହଳଦିଆ ନାରଙ୍ଗୀ ରଙ୍ଗ
ସପ୍ତବର୍ଣ୍ଣ ସପ୍ତରଙ୍ଗେ ସୁନ୍ଦର
ପୁଲହ ପୁଲସ୍ତ୍ୟ ଅତ୍ରୀ ଅଙ୍ଗିର ସେ
କ୍ରତୁ ବଶିଷ୍ଠ ମରିଚ ଯେ
ସପତ ମହର୍ଷି ରୂପେ ଏହି ଗଣା
ବ୍ରହ୍ମାଣ୍ଡେ କଥିତ ଅଛୁ ଯେ ॥

ଶ୍ରୀନାଥ ବ୍ରହ୍ମା ବିଷ୍ଣୁ ମହେଶ୍ୱର
ରବିଚନ୍ଦ୍ର ସ୍ୱର୍ଗ ମର୍ତ୍ତ୍ୟ ପାତାଳ
ବିଷ୍ଣୁ ଅଧିପତି ବଇକୁଣ୍ଠରେ
ଅଧିପତି ଇନ୍ଦ୍ର ସ୍ୱର୍ଗ ପୁରରେ
ପାତାଳରେ ରାଜାବଳି ଯେ
ମହାଭାରତ ରଚନା ବେଦବ୍ୟାସ
ମହର୍ଷି ମାରେ ଅଛୁ ପୁତ ଯେ ॥

ଗଣ ନାରାୟଣ ରୁଦ୍ର ପାର୍ବତୀ
ଭାସ୍କର ପଞ୍ଚଦେବତା ଅଟନ୍ତି
ଯୁଧିଷ୍ଠିର ଭୀମ ପାର୍ଥ ନକୁଳ
ସହଦେବ ପଞ୍ଚ ପାଣ୍ଡୁଙ୍କ ପୁତ୍ର ସେ
ଅହଲ୍ୟା ଦ୍ରୌପଦୀ ତାରା ଯେ
କୁନ୍ତୀ ମନ୍ଦୋଦରୀ ପଞ୍ଚକନ୍ୟା ଜପି
ତରି ଯାଆନ୍ତି ସଂସାର ଯେ ॥

—o—

# ବିଶାଳ ପୃଥିବୀ

ରାଗ-ରସକୁଲ୍ୟା

ପୃଥିବୀରେ ଉଚ୍ଚତମ ପର୍ବତ
ହିମାଳୟ ଭାରତେ ଅବସ୍ଥିତ
ବୃହତ୍ତମ ସହର ଯେ ଲଣ୍ଡନ
ଆୟତନ ତାହାର ଅକଳନ
ଟୋକିଓ ବହୁରତନ ଯେ
ଶକ୍ତିଶାଳୀ ସୈନ ଦଳ ଋଷିଆ
ରଞ୍ଜନ ରଣି୍ଗତା ରଣଯେନ ଯେ ॥

ଯାବୁଚୁଆନରେ ଅଫିମ ବୃକ୍ଷ
ନଦୀ ଉପରେ ଜନ ବସ ବାସ
ଜନବହୁଳ ଦେଶ ପୃଥିବୀରେ
ପରିପୂର୍ଣ୍ଣ ଛନ୍ତି ଚୀନ୍ ଦେଶରେ.
ବୈଜ୍ଞାନିକ ଆମେରିକା ଯେ
ବରଫର ମହାଦେଶ ଆଣ୍ଟାର୍କାଟିକା
ପୃଥିବୀରେ ଗ୍ରୀନ୍‌ଲାଣ୍ଡ ଯେ ॥

ଏସିଆ ମହାଦେଶେ ପ୍ରଶାନ୍ତ ସାଗର
ବଡ଼ହ୍ରଦ କାସ୍ପିଆନ ସାଗର
ଧନଶାଳୀ ଦେଶ ଯେ ଆମେରିକା
ବିଶାଳ ଭାରତ ପୃଥିରେ ଢକା
ଧନ ରତନରେ ଭରି ଯେ
ସେଲଭାସବନ ନଦୀ ଆମାଜନ୍
ବଡ଼ ପ୍ରଭୁ ବଳେ ପୃଥ୍ୱୀ ଯେ ॥

ଗ୍ରୀନଲଣ୍ଡ ଦେଶ ଛମାସ ରାତି
ଛମାସ ଦିନ ପୁଣି ଯାଏ ବିତି
ଜଗତେ କେଉଁଠି ଦେଖିନ୍ଥ କାହିଁ
ଜୀବନ ଯାପନ କରନ୍ତି ରହି ସେ
ଶାନ୍ତି ସୁଖେ ବସବାସ ଯେ
ଏ ସାରା ସଂସାର ବିଚିତ୍ର ପ୍ରକାର
ଦେଖି ଲାଗଇ ଆଶ୍ଚର୍ଯ୍ୟ ଯେ ।।



## ସୁନ୍ଦର ଆକାଶ

(ରାଗ-ରସକୁଲ୍ୟା)

ଆହାକି ସୁନ୍ଦର ଦିଶେ ଆକାଶ
ତାରା ତପନ ସୁଧାକର ଦୃଶ୍ୟ
ଚନ୍ଦ ଧୌତକରେ ଯାର ସାଗର
ମୁକ୍ତାକାଶେ ଖେଳଯାଏ ସମୀର ସେ
ହସଇ ମହୀମଣ୍ଡଳ ସେ
ଫୁଲୁ ଫୁଲୁ ହୋଇ ଉଲ୍ଲାସେ ବଢ଼ଇ ସତେ ଡାଳଇ ଚାମର ସେ ।୦।

ଲୋହିତ ଆଭାରେ ରଞ୍ଜେ ଅମ୍ବର
ପ୍ରାଚୀ ଗଗନେ ହସେ ଦିବାକର
ଉଷାରାଣୀ ଏହି ମଙ୍ଗଳ କାଳେ
ସାରା ଜଗତକୁ ଜାଗ୍ରତ କରେ ସେ
ବନ୍ଦଇ ଦେବ ଭାସ୍କର ସେ
ନିଜର କର୍ତ୍ତବ୍ୟ ଆରମ୍ଭ କରନ୍ତି ହରଷେ ସାରା ସଂସାର ସେ ।୧।

ଧାଡ଼ିଧାଡ଼ି ବିହଙ୍ଗ କୋଳାହଳ
ନୀଳ ଆକାଶେ ଉଡ଼ି ମାଳମାଳ
ନୃତ୍ୟନାଦେ ରବି ଖେଳ କରନ୍ତି
ନାନାରଙ୍ଗେ ଶୋଭନ୍ତି ପକ୍ଷୀ ପଂକ୍ତି ସେ
ବିଶ୍ୱ ବିଚିତ୍ର ପ୍ରକାର ସେ
କୋଟି କୋଟି ଜୀବ ଗଢ଼ିଛୁ ପାଳୁଛୁ ସରଜି ସାରା ସଂସାର ସେ ।୨।
ସନ୍ଧ୍ୟା ମଙ୍ଗଳାଙ୍କୁ ପ୍ରକୃତୀ ବାଳୀ
ପ୍ରାର୍ଥନା କରେ ଦେଇ ହୁଳହୁଳି
ନାଲି ଶାଢ଼ୀ ପିନ୍ଧି ଶୋଭା ସୁବେଶେ
କୁସୁମାଞ୍ଜଳି ବାନ୍ଧାଏ ହରଷେ ସେ
ପିନ୍ଧି ମଣିମୁକ୍ତା ମାଳା ସେ
ନାଦେ ଘଡ଼ଘଡ଼ ଝମକ କାହାଳୀ ନୃତ୍ୟ କରଇ ଚଞ୍ଚଳା ସେ ।୩
ପ୍ରକୃତୀ ବାଳୀ ପିନ୍ଧି ପାଟଶାଢ଼ୀ
ତୋଳେ ତାରଫୁଲ ଝଲକ ଝଳ
ଅସ୍ତ ସୂର୍ଯ୍ୟଙ୍କର ଅଗ୍ନିର ଧରି
ରଜନୀ ରାଣୀଙ୍କୁ ଦର୍ଶନ କରି
ଲଗାଇ ସିନ୍ଦୂରବିନ୍ଦୁ ସେ
ଆକାଶ ଅଙ୍ଗନେ ଦର୍ଶନ କରଇ ଶ୍ୱେତପଦ୍ମ ପ୍ରାପ୍ତ ଇନ୍ଦୁ ସେ ।୪।

# ପ୍ରଭାତ ବର୍ଣ୍ଣନା

ରାଗ-ଭୈରବି

ପ୍ରାଚୀକୋଳେ ଦିବାକର ନବରଙ୍ଗେ ଢଳଢଳ
ନାଲି ଟହଟହ ରଙ୍ଗ ଚୂର୍ଣ୍ଣ ଆକାଶେ
ସକଳ ବିହଙ୍ଗ କୁଳ କାକ ମୟୂର କୋକିଳ
ଖୋଜିବାପାଇଁ ଆହାର ଉଡ଼ ଉଲ୍ଲାସେ
ନଭେ ତାରାଙ୍କ ନାଶେ
ଧୀରେ ଧୀରେ ଦିନମଣି ଜ୍ୟୋତି ପ୍ରକାଶେ ।୧।

କରନ୍ତି କର୍ତ୍ତବ୍ୟ କର୍ମ ଧରଣୀ ଜ୍ୟୋତି ପ୍ରଦାନ
ଆଶ୍ୱାସ ଦେଇ ପ୍ରକାଶେ ରଜନୀ ଶେଷେ
ପ୍ରଭାତ ମଙ୍ଗଳ ସମୟେ
ଅରୁଣ କିରଣ ମାଳ ହୋଇ ଉଦୟେ ।୨।

ପ୍ରାଚୀବାଳା ପିନ୍ଧି ଶାଢ଼ୀ ମଥାରେ ସିନ୍ଦୂର ମାରି
ବନ୍ଦେ ସୂର୍ଯ୍ୟ ଦେବଙ୍କୁସେ ଅବିର ଧରି
ଆହାକି ହରଷ ଚିତ୍ତେ ସ୍ୱର୍ଣ୍ଣଥାଳି ଧରି ହସ୍ତେ
ପ୍ରଣମେ ଛାୟାକାନ୍ତଙ୍କୁ ଦର୍ଶନ କରି
ଦିନନାଥଙ୍କର ଜ୍ୟୋତିରେ
ଆଲୋକିତ ହୋଇ ଉଠେ ଧରା ବକ୍ଷରେ ।୩।

—*—

## ପ୍ରଦୋଷ ବର୍ଣ୍ଣନା

ରାଗ-ଆହାରୀ

ପଶ୍ଚିମ ନୀଳ ଆକାଶେ ଅସ୍ତାଚଳେ
ପ୍ରକଟୀ ବାଳୀ ସୁନ୍ଦରବେଶେ
ନେହ୍ୱତ ଶାଢ଼ୀ ପିନ୍ଧ କରେ ବନ୍ଦନା
ସନ୍ଧ୍ୟା ମଙ୍ଗଳାଙ୍କୁ ସୁବେଶେ
ସୁଜନେ, ରକ୍ତିମା ଆକାଶ ଦିଶଇ
ଧେନୁପଲ୍ଲ ପଛେ ଗୋପାଳେ ଫେରନ୍ତି
ଗୋବତ୍ସା ମାନଙ୍କୁ ଅଡ଼ାଇ ।୧।
ପଲ୍ଲୀବଧୂ ସନ୍ଧ୍ୟା ଦୀପାଳି ବନ୍ଦାଇ
ଦେବା ଦେବୀଙ୍କି ଯେଳଗଇ
ମନ୍ଦିରେ ଘଣ୍ଟ କାହାଳୀ ଦ୍ରୁଲଦ୍ରୁଲ
ଶବଦେ ଉଚ୍ଛୁଳ ପଡ଼ଇ
ସୁଜନେ, ସନ୍ଧ୍ୟାମଙ୍ଗଳା ଝଟକଇ
ଦିବସର ଶେଷେ ଜାଣି ପକ୍ଷୀପଂକ୍ତି
ନୀଡ଼କୁ ମାଳମାଳ ଧାଇଁ ।୨।
ସନ୍ଧ୍ୟାବାଳୀ ପାଟ ପିନ୍ଧ ଝକମକ
ଦିନନାଥ ରଖେ ଛୋଡ଼ାଇ
ନଭେ ଚନ୍ଦ୍ର ତାର ଉଇଁଣ ଉଲ୍ଲାସେ
ଆକାଶକୁ ମଣ୍ଡି ଦିଅଇ
ସୁଜନେ, ରଜନୀ ରାଣୀଙ୍କୁ ବନ୍ଦାଇ
ଅପୂର୍ବ ଶୋଭାରେ ଗଗନ ଧରଣୀ
ମହାନନ୍ଦେ ହସି ଉଠଇ ।୩।

—*—

# ଗ୍ରୀଷ୍ମ ବର୍ଣ୍ଣନା

(ରାଗ-ଆହାରୀ)

ବସନ୍ତ ଶେଷରେ  ଗ୍ରୀଷ୍ମ ପ୍ରବେଶରେ
ଧରାଧାମ ହୁଏ ଉତପ୍ତ
ମହା ଖରତର  କରଜାଳ କରେ
ପଥରେ ପଥିକ ସନ୍ତପ୍ତ
ସୁଜନେ, କ କହିବା ମହୀ ବୃତ୍ତାନ୍ତ
ଜଳ ବିହୁନେ  ବନ୍ୟଜନ୍ତୁ ସକଳେ
ହୋଇଲେ ଅତି ମର୍ମାହତ ।୦।
ବନରେ ଅନଳ  ଲାଗିଣ ପ୍ରବଳ
ସ୍ୱର୍ଣ୍ଣହାର ପରି ଶୋଭଇ
କ୍ରମେ ଘଞ୍ଚବନ  ହୁଅଇ ଦହନ
ଶବଦେ ଗଗନ କମ୍ପଇ
ସୁଜନେ, ଗ୍ରୀଷ୍ମ ତାପେ ଜୀବ ଆରତେ
ବର୍ଷା ଆଗମନେ  ଅନାଇ ରହନ୍ତି
ଚାତକ ଯେସନେ ନୀରତେ ।୧।
କେ ମହା ସୁଖକେ  କାମିନୀ ସଙ୍ଗରେ
ଚନ୍ଦନ ଅଙ୍ଗରେ ଲେପନ୍ତି
କେ ଗ୍ରୀଷ୍ମ ବାଧାରେ  ଯାଇ ଝରଣାରେ
ସରସୀ ସଳିଳେ ବୁଡନ୍ତି
ସୁଜନେ, କେ କରେ ବାହାରେ ବିହାର
ପଶୁପକ୍ଷୀ ସର୍ବେ  ମଉନେ ରହିଣ
କୁଞ୍ଜରେ ରହିଲେ ନିଶ୍ଚଳ ।୨।

—୦—

# ବର୍ଷା

ରାଗ-ରସକୁଲ୍ୟା

ବରଷା କାଳରେ ମଙ୍ଗଳକାରୀ
ଶ୍ୟାମଳ କେଦାରେ ବସୁଧା ଭରି
ଗ୍ରୀଷ୍ମ ତାପ ଶେଷେ ବରଷା ଆସେ
ଘୋଟି ମେଘମାଳ ନୀଳ ଆକାଶେ ସେ
ଝଟକ ଉଠେ ବିଜୁଳି ଯେ
ବଜ୍ରନାଦେ କମ୍ପି ଉଠଇ ବସୁଧା
ବରଷେ ମୁଷଳ ଧାର ଯେ ।୧।
"କୃଷକ ବନ୍ଧୁର" ଗୀତ ଲହରୀ
କୃଷିକ୍ଷେତ୍ରେ କର୍ମ ଆନନ୍ଦେ କରି
ଇନ୍ଦ୍ରଧନୁ ବିରାଜେ ସପ୍ତରଙ୍ଗେ
ହସଇ ପୃଥିବୀ ବିଭିନ୍ନ ଭଙ୍ଗେ ସେ
ଚହଟି ଉଠଇ ମହୀ ଯେ
ପ୍ରକୃତିର ଶୋଭା କେ ବର୍ଣ୍ଣିବ ଅବା
ଆନନ୍ଦ ନହୁଏ କହି ଯେ ।୨।
ବସୁନ୍ଧରା ତରୁ ପଲ୍ଲବୀ ଲତା
ତାଳମ୍ବ ସଲିଳ ଇନ୍ଦ୍ର ଦେବତା
ଦୃଷ୍ଟି ଦେଇ ବୃଷ୍ଟି କରେ ସୃଷ୍ଟିକୁ
ପାଳି ଜୀବନ ରଖେ ଜଗତକୁ ସେ
ଫଳଫୁଲ ଉପୁଜାଇ ଯେ
ତା ଯୋଗେ ବ୍ରହ୍ମାଣ୍ଡ ସମ୍ପଦ ବିଭବ
ଶାନ୍ତି ସୁଖେ ଚଳେ ମହୀ ଯେ ।୩।

—o—

## ଶୀତ ବର୍ଣ୍ଣନା

ରାଗ-ଆହାରୀ

ବର୍ଷାକାଳ ଅନ୍ତେ ପ୍ରବେଶ ହୁଅନ୍ତେ
ମହାଘୋର ଶୀତ ସମସ୍ତ
ଲୋଡ଼ଇ ବସନ ତପନ କଉଣ
ଥୁରୁ ଥୁରୁ ମାନବକାୟ, ସୁଜନେ
ଘୋର ଶୀତ ମହା ଘୋଟଇ
ଚଇଳ ତାମ୍ବୁଳ ଚପ୍ତ ଅନ୍ନ ଜଳ
ଜୀବନ ସୁଖକୁ ଲୋଡ଼ଇ ।୦।

ଶୀତ କାଳ ଜାଡ଼ ଘାଙ୍କିଦଏ ହାଡ଼
ଜୀବଙ୍କ ଉଦ୍ବଗ ବକଳ
ତରୁଣୀ ବୟସୀ ହସି ରସି ଖ୍ରସି
ଶୀତ ଋତୁକୁ ସୁଖକର, ସୁଜନେ
କୁହୁଡ଼ିମୟ ଓ ତୁଷାର
ପାତ ଆପାତନ ତୁଳକା ଶୟନ
ମନଲୋଡ଼େ ନାନାପ୍ରକାର ।୧।

ରତନ ପଲ୍ୟଙ୍କେ ଗରମ ପୋଷାକ
ତୁଳତଳ୍ପ ଶଯ୍ୟା ଲୋଡ଼ଇ
ଶୀତକାଳ ଦ୍ରବ୍ୟ ମନରେ ଅପ୍ରାପ୍ୟ
କାର୍ଯ୍ୟରେ ଉଦାସ ରହଇ, ସୁଜନେ
ଶୀତଋତୁ ବଡ଼ ବଷମ
ବଷମ ହେଲେହେଁ ସୁଷମ ମିଳଇ
ସୁଖ ଲୋଡ଼ୁଥାଏ ମରମ ।୨।

ନବଷ୍ଠ ବୃକ୍ଷକୁ ଆବୋରଇ ମନ
ଅଗ୍ନି ତପନକୁ ସଙ୍ଗନ
କାମ ଓ କାକର ସଲିଳ ପବନ
ଘେରନ୍ତି ଯମଦୂତ ସମ-ସ୍ୱଜନେ
ଶୀତରେ ଲକ୍ଷ୍ମୀ ବିରାଜନ୍ତି
ଏ ଜୀବ ଜଗତ ଲଭିଣ ତୃପତ
ଆନନ୍ଦେ ସରବେ ହସନ୍ତି ।୩।

## ପୂର୍ଣ୍ଣିମା ଚନ୍ଦ୍ର ବର୍ଣ୍ଣନା

ନୀଳ ଆକାଶରେ ପୂର୍ଣ୍ଣିମା ଜହ୍ନ
ଆକାଶ ମଣ୍ଡଳ କରେ ମଣ୍ଡନ
ନକ୍ଷତ୍ର ଗଣ ମହା ଆନନ୍ଦରେ
ଲକ୍ଷ ଲକ୍ଷ ଶୋଭନ୍ତି ହରଷରେ
ମଣ୍ଡି ପକାଏ ଆକାଶ ଯେ
ରଜନୀ ରାଣୀର ଗଳାରେ ସୁନ୍ଦର
ସ୍ୱର୍ଣ୍ଣ ପଦକ ସଦୃଶ ଯେ ।୧।

ବିଭିନ୍ନ ରଙ୍ଗେ ପିନ୍ଧି ପାଟଶାଢ଼ୀ
ଯାମିନୀ କାମିନୀ ବେଶକୁ ଧରି
ସୁଧାଂଶୁ ପାଶରେ ସେ ଉଭାହୋଇ
ତାର ତରୁଣୀଏ ମନକୁ ମୋହି
ନିଶାନାଥ ମଣ୍ଡି ହୋଇ
ନାନାରଙ୍ଗ ଇନ୍ଦ୍ର ଧନୁ ବିରାଜଇ
ମୁକୁଟ ପ୍ରାୟ ଶୋଭଇ ।୨

ଆକାଶ ରୂପକ ମହାସାଗର
ତାମଧ୍ୟେ ସୁଧାଂଶୁ କରେ ବିହାର
ମଲ୍ଲିକାପୁଷ୍ପ ସମପ୍ରାୟ କାନ୍ତି
ତାରାମାନେ କି ସୁନ୍ଦର ଦିଶନ୍ତି
ଶୋଭାରେ ଉଠଇ ପୂରି ଯେ
ଆହା କି ସୁନ୍ଦର ଆକାଶ ମଣ୍ଡଳ
ବର୍ଣ୍ଣନାରେ ଯାଏ ବଳି ଯେ ।୩।



## ପୃଥିବୀର ମହାଦେଶ

ବଗ-ଇସକୁଲ୍ୟା

ପୃଥିବୀର ସପ୍ତ ମହାଦେଶ
ଏସିଆ ଆଫ୍ରିକା ଯେ ୟୁରୋପ
ଅଷ୍ଟ୍ରେଲିଆ ଉତ୍ତର ଆମେରିକା
ଆଣ୍ଟାର୍କାଟିକା ଦକ୍ଷିଣ ଆମେରିକା
ସାତଗୋଟି ମହାଦେଶ ଯେ,
ଏହିପରି ଦେଶ ବିଶ୍ୱେ ରହିଅଛି
ଧରଣୀରାଣୀ ନିବାସ ଯେ ।

## ପୃଥିବୀର ପଞ୍ଚସାଗର

ପୃଥିବୀ ମଧ୍ୟରେ ପଞ୍ଚସାଗର
ହେଉଛି ପ୍ରଶାନ୍ତ ମହାସାଗର
ନୃତ୍ୟ କରୁଅଛି ଆଟଲାଣ୍ଟିକା
ଭାରତ ମହାସାଗରେ ଡ଼କା ଯେ
ଉତ୍ତର ମହାସାଗର
ବନ୍ଦାଉଛି ଦକ୍ଷିଣ ମହାସାଗର
ଧରଣୀରାଣୀ ପସୂର ଯେ,
ସାରା ଭୂମଣ୍ଡଳ ରହିଛି ପୂରି
ଜଳ, ସ୍ଥଳ, ନଭ ମହିମାଶିଖି
କେତେ ନଦୀ ବନ କନ୍ଦର ଗିରି
ରହିଛି ଜଗତ ଭରିକୁ ଧରି ଯେ
ଶାନ୍ତିରେ ଜଗତ ବାସୀ
କୋଟି କୋଟି ସୁତ ସୁତା ଧରି ମାତ
ଗୌରବରେ ହସି ହସି ଯେ

—*—

# ପୃଥିବୀର ପ୍ରସିଦ୍ଧ ସ୍ଥାନ

ରାଗ-ରସକୁଲ୍ୟା

ଭାରତ ଭୂସ୍ୱର୍ଗ ଅଟେ କାଶ୍ମିର
ଭାରତରେ ଶୋଭେ ବମ୍ବେଇ ଦ୍ୱାର
ଶ୍ରୀକ୍ଷେତ୍ର ଅଟେ ଚଉଧାମେ ସାର
ମନ୍ଦିରମୟ ଯେ ଭୁବନେଶ୍ୱର
ଉଦ୍ୟାନ ଲକ୍ଷ୍ନୌ ସହର
ସାନ୍ ଫ୍ରାନସିସ୍କୋ ସୁବର୍ଣ୍ଣର ଦ୍ୱାର
ଗୋଲାପିସେ ଜୟପୁର ଯେ ॥

ପ୍ରାସାଦମୟୀ ଅଟେ କଲିକତା
ଭାରତ ସର୍ବଗୁଣେ ଜଗଜ୍ଜିତା
ପୃଥିବୀର ଶସ୍ୟାଗାର ୟୁକ୍ରେନ
ବଙ୍ଗାଳ ଭାରତ ବଡ଼ ମଣ୍ଡଳ
ଦୁର୍ଗ ରାଜ୍ୟ ରାଜସ୍ଥାନ
ସହସ୍ର ହ୍ରଦ ରାଇଜ ଫିନ୍‌ଲ୍ୟାଣ୍ଡ
ସୂର୍ଯ୍ୟ ଉଦୟ ଜାପାନ ଯେ ॥

ୟୁରୋପ ଖେଳ ପଡ଼ିଆ ସୁଇଜର
ଶ୍ୱେତହସ୍ତୀ ଥାଇଲ୍ୟାଣ୍ଡ ଦେଶର
ଋଷି ମୁନି ରାଜ୍ୟ ଅଟେ କୋରିଆ
ଗୋଲାପ ଫୁଲର ବୁଲଗେରିଆ
ଗୋରୁପଲ୍ଲୀ ଆର୍ଜେଣ୍ଟିନା ଯେ
ଜଗତର ନାଥ ଦେଶ ନାମେ ଖ୍ୟାତ
ସଂସାରେ ଉତ୍କଳ ସିନା ଯେ ॥

ଷ୍ଟକହୋମ୍ ଜନ ଜଳରେ ବାସ
ମର୍ତ୍ତ୍ୟନନ୍ଦନ ବନ ଡ଼ାମାସ୍କସ
ବଗଠକାସ୍ତୁ ପ୍ରାଚୀର ଚୀନ୍‌ରେ
ପାମିର ନାମ ଗୁଛ ପୃଥିବୀରେ
ତମସାଚ୍ଛନ୍ନ ଆଫ୍ରିକା
ନ୍ୟୁୟର୍କେ ଗଗନଭେଦ ପ୍ରାସାଦ
ଓଢରେ ଅଳ୍ପ ନାହିଁକି ସେ ॥



## ଜଗତର କଲେଜ

ଶ୍ରୀ ନୀଳାଚଳ କଲେଜ କି ବଢ଼ିଆରେ
କଲେଜ ପଢ଼ି ନ କଲେଜ ଶ୍ରେଷ୍ଠ ସଂସାରେ
ପ୍ରିନ୍‌ସପାଲ ଜଗନ୍ନାଥ ସବୁ ବିଦ୍ୟାରେ ସମର୍ଥ
ନିଯୁକ୍ତ କରିଅଛନ୍ତି ଇନ୍ଦ୍ରଦ୍ୟୁମ୍ନରେ ।୧।

ବଳଭଦ୍ର ପ୍ରଫେସର ବିଜେ ସୁଭଦ୍ରା ରିଡର
ଲକ୍ଷ୍ମୀ, କମଳା ବିମଳା ଲେକ୍‌ଚରରେ
ଖ୍ୟାତନାମା ସୁଦର୍ଶନ ଚତୁର୍ଦ୍ଧା ରୂପେ ପିଅନ
ବଡ଼ ସୁନ୍ଦର ଚଳାନ୍ତି ସେ କଲେଜରେ ।୨।

ଗଣ୍ଡା ଗଣ୍ଡା ଲେକ୍‌ଚର ଅଛନ୍ତି କର୍ମୀ ଦଳ
କରିବାପାଇଁ କର୍ତ୍ତବ୍ୟ ଅବିରତରେ
ନୀଳାଚଳ କଲେଜରେ ପଢ଼ିଶ୍ରେଷ୍ଠ ଜଗତରେ
ଦାସିଆ ବନ୍ଧୁ ମହାନ୍ତି ନାମ ଖ୍ୟାତରେ ।୩।
ଜୟଦେବ ସାଲବେଗ ଶାରଳା ଶ୍ରୀ ଜଗନ୍ନାଥ
କେତେ ଗ୍ରନ୍ଥ ଗ୍ରନ୍ଥୀ ହୋଇଛନ୍ତି କବିରେ
କୋଟି କୋଟି ସୁତ ସୁତା ପଢ଼ି ହୋଇଛନ୍ତି ଜଟା
ସୁବିଖ୍ୟାତ ହୋଇଛନ୍ତି ସାରା ସଂସାରେ ।୪।
ଖାଇ ବୁଲିବେ ମଜାରେ ଦ୍ରବ୍ୟ ଆନନ୍ଦ ବଜାରେ
ଗଢ଼ା ହୋଇଛି ହଷ୍ଟେଲ ଗ୍ରନ୍ଥ ପାଇଁରେ
ବଙ୍ଗୋପସାଗର ଯାଇ ମଜ୍ଜାରେ ବୁଲିବାପାଇଁ
ଲଭନ୍ତି ସରଗ ସୁଖ କି ଆନନ୍ଦରେ ।୫।
ଗୃହଧାମେ ଷେତ୍ରସାର ଶୋଭା ବର୍ଣ୍ଣନା ପ୍ରକାର
ଦେଖିମନ ମୋହିନିଏ ମହା ସୁଖରେ
ଅସରନ୍ତି ଗନ୍ଥାଗାର ପୂର୍ଣ୍ଣହୋଇଛି ଭଣ୍ଡାର
ଯେତେ ଭୁଞ୍ଜିଲେ ନସରେ ଅକଳନ୍ତି ରେ ।୬।
ଶୁଭ କାର୍ଯ୍ୟରେ ଗଣେଶ ବିଘ୍ନକୁ କରନ୍ତି ନାଶ
ମା ସରସ୍ୱତୀ ଙ୍କର କି କରୁଣାରେ
ହଷ୍ଟେଲ ପ୍ରସିଦ୍ଧ ଅନ୍ନ ଚଣ୍ଡୀଙ୍କ ବ୍ରାହ୍ମଣ ଯାଣ
ଭୁଞ୍ଜନ୍ତି ଏକଠା ହୋଇ କି ଉଲ୍ଲାସରେ
ଶ୍ରୀ ଗୁଣ୍ଡିଚା ମହାରାଣୀ ଖଞ୍ଜିଅଛି ଦାନାପାଣି
ତର ଦୁଃଖ ଖଣ୍ଡିଯାଏ ସୁଖଶାନ୍ତିରେ ।୭।

# ସଂସାରର ମେଡ଼ିକାଲ

ନୀଳଗିରି ମେଡ଼ିକାଲ୍ କ ବଡ଼ିଆରେ
କେତେ କେତେ ବଡ଼ବ୍ୟାଧି ଯାଏ ଖଣ୍ଡିରେ
ଗୋରା କାଳିଆ ଡାକ୍ତର ବସିଛନ୍ତି ମେଡ଼ିକାଲ୍
ବିଜେ କରି ନୀଳାଚଳେ ବେନି ଭାଇରେ ।୧।
ବସି ତିନି ଚିକିତ୍ସକ ରୋଗ ଚିହ୍ନନ୍ତି ଅନେକ
ବଡ଼ ବଡ ରୋଗୀମାନେ ଚିକିତ୍ସାଳୟରେ
କରି ଯାଇଛନ୍ତି ଚାକ୍ରି ହୋଇଅଛନ୍ତି ନିଯୁକ୍ତ
ରାଜାଶ୍ରୀ ମହାମହିମ ଇନ୍ଦ୍ରଦ୍ୟୁମ୍ନରେ
ବଙ୍ଗୋପସାଗର କୂଳେ ନୀଳଗିରି ମେଡ଼ିକାଲେ
ବେହେରା ରୂପେ ଗରୁଡ଼ ଆଉଟ୍ ଡୋରରେ
ଜଗନ୍ନାଥ ଡ଼ାଇରେକ୍ଟର ସୁଭଦ୍ରା ଲେଡ଼ିଜ୍ ଡାକ୍ତର
ସିଭିଲସର୍ଜନ ବଳଭଦ୍ର ଚିକିତ୍ସାରେ ।୩।
ଜଳତୁଳସୀ ସେବନ ପ୍ରାପ୍ତ ଫୋଡ଼ ଇଞ୍ଜେକ୍‌ସନ
ଖଜା ଗଜା ଲଗେ ମଜା ଟାବ୍‌ଲେଟରେ
ପୀଡ଼ିତ ସନ୍ତାପ ଜର ତାପକୁ କରି ନଜର
ଦେଖି ସେ ଜର ମାପନ୍ତି ଅନୁମାନରେ ।୪।
ଶ୍ରୀଗୁଣ୍ଡିଚା ମହାରାଣୀ ଖଞ୍ଜିଅଛି ମନଯାଣି
ସବୁ ରୋଗ ବ୍ୟାଧି କରନ୍ତି ଆରୋଗ୍ୟରେ
ଯାଏ ରୋଗ ଦୂରହୋଇ କୈବଲ୍ୟ କଣିକେ ପାଇ
ଅବଲମ୍ବେ ରୋଗୀକୁସେ ଉଦ୍ଧାର କରେ ।୫।
ନର୍ସ ଧାଇ ଗଣ୍ଡା ଗଣ୍ଡା ସେବାପାଇଁ କେତେ ପଣ୍ଡା
ଔଷଧ ପ୍ରାପ୍ତ ପ୍ରସାଦ ମେଡ଼ିକାଲ୍‌ରେ
ଗଣ୍ଡା ଗଣ୍ଡା କମ୍ପାଉଣ୍ଡର ପାଇଛନ୍ତି ବସାଘର
କମଳା ବିମଳା ରହିଛନ୍ତି ସେବାରେ ।୬।

ରୋଗୀଙ୍କ ଦୁଃଖ ଶୁଣିଣ ଉଦ୍ଧାର କରେ ଜୀବନ
ସର୍ବବ୍ୟାଧି ବିପଦରୁ ଖଲାସ କରେ
ବଞ୍ଚିଛନ୍ତି ସୁତସୁତା ମନରେ ନକର ଶଙ୍କା
ଏପରି ଡ଼ାକ୍ତର ନାହିଁ ପାରି ସଂସାରେ ।୮।



## ପଠାଣୀ ସାମନ୍ତ

ରାଗ-ଚୈତ୍ରୀ

ପୂର୍ବେ ଓଡ଼ିଶା ରାଜ୍ୟର ସାମନ୍ତ ଚନ୍ଦ୍ରଶେଖର
ପୂଣ୍ୟମସ୍ତ ଧରଣୀରେ ଥିଲେ ପ୍ରସିଦ୍ଧ
ଲେଖି ଲେଖି ତାଳ ପୋଥି କେତେକାଳ ଗଲାବିତି
ସିଦ୍ଧାନ୍ତଦର୍ପଣ ଗ୍ରନ୍ଥ କରି ସିଦ୍ଧାନ୍ତ
ଭାରତ ଗୌରବ ମହିମା
ବଢାଇ ଯାଇଛନ୍ତି କାଳ କାଳକୁ ସିନା ॥
ଡ଼ାକ ଗୋରା ସରକାର ପ୍ରଶ୍ନର ଦିଅ ଉତ୍ତର
ପୃଥିବୀ ତପନ ମଧ୍ୟେ କିଏସେ ସ୍ଥିର
ପ୍ରଶ୍ନ ଶୁଣିବା ମାତ୍ରେଣ ପୃଥିବୀ ସ୍ଥିର ପ୍ରମାଣ
ତପନଟି ଘୂରୁଅଛି ସତ୍ୟ ମୋ ଗିର
ଦନ୍ତାବଳ ଅକାଟ୍ୟ ଯୁକ୍ତି
ଇଂଲଣ୍ଡ ବିଜ୍ଞାନ ମଥା ଉଡ଼ିଲେ ପୋତି ॥

ଧବଳଗଡ଼ ଦରବାରେ ଚନ୍ଦ୍ରାପଣ୍ଡ଼ ଗୋଷ୍ଠିପିଲେ
ଛପନ ଅସ୍ଥିର ବୋଲି ହେଲା ପ୍ରମାଣ
ଦେଖି ଲେଖିଛୁ ସାମନ୍ତ ଯାହା କରିଛୁ ସିଦ୍ଧାନ୍ତ
ପ୍ରମାଣରେ ଇଂଲଣ୍ଡିଆ ହୋଇଲେ ନ୍ୟୁନ
ଗୋଷ୍ଠିପିଲେ ହେଲେ ଘୃଣିଆ
ଜାଣିଲେ ସାମନ୍ତଙ୍କର ଗୁଣ ଗାରିମା ॥
ଧନ୍ୟ ପଠାଣି ସାମନ୍ତ ରଖିଗଲ ଦେଶ ଟେକ
ସିଦ୍ଧାନ୍ତଦର୍ପଣ ଲଭିଅଛୁ ଶାଶ୍ଵତ
ତୁମ ଗଣନା ମହିମା ନପାଇଲେ ଅନ୍ତସୀମା
ପ୍ରମାଣିତ ହେଲତୁମେ ବାଣୀଙ୍କ ପୁତ୍ର
ଯୁଗେ ଯୁଗେ କୀର୍ତ୍ତି ରଖିଲ
ମହା ମହୋପାଧ୍ୟାୟ ଉପାଧି ଲଭିଲ ॥



## ଭଗବତୀ ବନ୍ଦନା

ମା' ଭଗବତୀ ଏତକ ତୋପାଦେ ପ୍ରଣତ ମା ଭଗବତୀ (ଘୋଷା)
ମାଘ, ବାଲ୍ମୀକ, ବ୍ୟାସ, ଶ୍ରୀହର୍ଷ କାଳି ଦାସ
ବରଦ ଗୁରୁକଳା କୀର୍ତ୍ତି
ଶ୍ରୀ ଲାଲ ବାଲ ପାଲ ବାପୁଜୀ ଜବାହର
ପଟେଲ୍ ସୁବାସ ସୁଖ୍ୟାତି ।୧।

ବୁଦ୍ଧ, ଶଙ୍କରାଚାର୍ଯ୍ୟ ନାନକ ରାମାନୁଜ
ସଂସ୍କୃତ ସାହିତ୍ୟ ବିସ୍ତୃତ
ହେବାରୁ ତୋ କରୁଣା କଣିକେ ମାଗି ପିନା
ରଖିଲେ ଜଗତେ ଖ୍ୟାତ ।୧।
ଗଜରବରେ ଋଷି ଏହି ଭାରତ ବାସୀ
ତୋନାମ ଶାସ୍ତ୍ରଗଲେ ଜାତ
ଏ ପବିତ୍ର ଭାରତ ହୋଇଲା ବିକଶିତ
ତୋ ମହିମା ବଖ୍ୟାନ୍ତ ଚିତ୍ତ ।୨।
ଅଭସ୍ଥ ନାମ ଜପି ପାରାବାରକୁ କପି
ଠାବ କରିଲା ସୀତା ସତୀ
ତୋ ମହିମା ଗରବେ ଉଡ଼ାଇ ବାନା ଭବେ
ମହୀର କଲୁ ମା ଉନ୍ନତ ।୩।
ନଗରାଜ ନନ୍ଦିନୀ ବିଜେ ପାରିନ୍ଦ୍ର ବାହିନୀ
ଉଦ୍ଧାର କଲୁ ମା ବିପତ୍ତି
ତୋ କଣିକେ କରୁଣା ହେଲେ ଜଗତେ ଜଣା
ଏତିକ ତୋ ପଦେ ମିନତି ।୪।
ବିଶ୍ୱ କଲ୍ୟାଣ ଅର୍ଥେ ଶୁଭଦୃଷ୍ଟି ନିମନ୍ତେ
ସର୍ବଦା ତୋରନାମ ଶାସ୍ତ୍ର
ତୋ ପଦେ ରଖି ଶତ ପଦ ଦେଖାଇ ମାତ
ଆଶୁକବି ମଧ୍ୟରେ ଖ୍ୟାତ -ମା ଭଗବତୀ ।୫।



## ପଞ୍ଚ ମହାମାନବ ବନ୍ଦନା

ଗାନ୍ଧିଜୀ ହେ ଜଗନ୍ନାଥ ଦେଶ ଭୂଷଣ
ଅହିଂସା ମନ୍ତ୍ର ଦେଇ କଲ ସ୍ୱାଧୀନ
ନମୋ ଜହ୍ନ ନାରାୟଣ ଜବାହାରଙ୍କ ଶାସନ
ଭାରତକୁ ରକ୍ଷାକର ଦେଲ ସୁଜ୍ଞାନ ।୦।
ଲୁହ ମର୍ଦ୍ଦାର ପଟେଲ ମହିମା ମେରୁ ଅଟଳ
ଭାରତରୁ ହଟାଇଲ ଗୋରା ଶାସନ
ଜଗତମାତ ଅମ୍ବିକା ଇନ୍ଦିରା ରୂପେ ବନ୍ଦିତା
ଗାନ୍ଧି ଆଦରଣ ପାଳ ଜଗତେ ଧନ୍ୟ ।୧।
ଈଶ୍ୱର ପ୍ରାପ୍ତ ସୁଭାଷ ମହିମା କଲ ପ୍ରକାଶ
ଆଜ ଝୁରୁଅଛି ଦେଶ ଲୋଖିଛି ସମାନ
ଏମାନଙ୍କ ଲାଗି ଦେଶ ଜଗତେ ମହା ଆଦର୍ଶ
କୋଟି କୋଟି ଜନତାର ଚିର ବନ୍ଦନ ।୨।
ଦେଶ ଓ ଜାତିର ପିତା ଅଟନ୍ତି ବାପୁ ଦେବତା
ତାଙ୍କ ଆଦରଣ ସର୍ବେ କର ସ୍ମରଣ
ଭାରତ ମାତା ଗରବ ରଖିଲେ ମହାମାନବ
ବିଶାଳ ଭାରତେ ଆଣିଥିଲେ ସ୍ୱାଧୀନ ।୩।
ସର୍ବଗୁଣେ ପରିପୂର୍ଣ୍ଣ ଭାରତ ଦେଶ ସମାନ
ସାରା ଜଗତେ ରହିଛି ଉଚ୍ଚ ଆସନ
ଏ ପଞ୍ଚ ମହାମାନବ ବଢ଼ାଇ ଦେଶ ଗୌରବ
ଜନଗଣ ମନବାଞ୍ଛା କଲେ ପୂରଣ ।୪।



## ମହାନ୍ ଭାରତ

ଭାରତମାତା ଆମର ରେ ଭାରତ ମାତା ଆମର
ତା ବକ୍ଷେ ଉଡ଼ଇ ଜାତୀୟ ପତାକା ତ୍ରୀରଙ୍ଗ କେତେ ସୁନ୍ଦର ॥
ପବିତ୍ର ଭାରତ ଶୋଭା ବଢ଼ାଉଛି ନଦ ନଦୀ ବନଗିରୀ
ଆହାକି ବଢ଼ିଛି ପବିତ୍ର ସର୍ଜନା ହସି ଉଠେ ବସୁନ୍ଧରୀ ॥
ଭାରତ ଉତ୍ତରେ ହିମାଳୟ ଗିରୀ ଦକ୍ଷିଣେ ମହାସାଗର
ପୂର୍ବେ ଖେଳଇ ବଙ୍ଗୋପସାଗର ପ୍ରାଚୀ ଆରବସାଗର ॥
ଭାରତ ମଧ୍ୟରେ ବିନ୍ଧ୍ୟ ପର୍ବତ ମୁକୁଟ ପ୍ରାୟ ସୁନ୍ଦର
ଗଙ୍ଗା ଗୋଦାବରୀ ସିନ୍ଧୁ ବ୍ରହ୍ମପୁତ୍ର ଭାରତ ମାତାର ହାର ॥
ସବୁଜ ଶାଢ଼ୀରେ ଶ୍ରୀଅଙ୍ଗ ଭୂଷିତ ହସେ କେତେ ମନୋହର
ତୋ ସମକେ କାହିଁ ନାହିଁ ସଂସାରରେ ଅତୁଳ ତୋ ଗନ୍ଧାହର ॥
ତୋ ଗରଭେ ମାତ ସକଳ ସମ୍ପଦ ଅପରିମିତ ତୋ ଭଣ୍ଡାର
ହିମାଳୟ ଠାରୁ କୁମାରୀକା ଯାଏଁ କରିଛୁ ଯଶ ବିସ୍ତାର ॥
ବମ୍ବେଇ ମାଡ୍ରାସ ଅହମଦାବାଦ କଲିକତା ବାଙ୍ଗାଲୋର
ହାଇଦରାବାଦ ଦିଲ୍ଲୀ ରାଜଧାନୀ ଭୋପାଳ ଭୁବନେଶ୍ୱର ॥
ଲକ୍ଷ୍ନୌ ବାରଣାସୀ ପାଟଣା ଗୌହାଟି ଚଣ୍ଡିଗଡ଼ ଶ୍ରୀ ନଗର
ପୁନା ଜଳନ୍ଧର ତ୍ରିଭେନ୍ଦ୍ରମ ଜାମ୍ମୁ ଭାରତେ ବଡ଼ ସହର ॥
ମୋ ଦେଶ ସମାନ ଅଛି କେ ସଂସାରେ ସରଗ ଠାରୁ ଏ ବଳେ
ସ୍ୱାଧୀନ ଦେଶର ସନ୍ତାନ ବୋଲି ମୁଁ ଗର୍ବକରେ ମହୀତଳେ ॥
କୋଟି କୋଟି ସୁତ ସୁତା ଧରି ମାତ ପାଳିଛୁ ଖେଳାଉ ଖେଳ
ଭାରତ ମାତାର ଗଉରବ ଗୀତ ଘୋଷଇ ସାରା ସଂସାର ॥



## ପୁଣ୍ୟଭୂମି ଭାରତ

ଅହା କି ସୁନ୍ଦର କି ଆନନ୍ଦମୟ
ଏ ପୁଣ୍ୟ ଭାରତ ଭୂଇଁ
ଜଗତର ନାଥ ବିଜେ କରିଛନ୍ତି
ସଂସାର ପାଳିବା ପାଇଁ ।୦।
ହୃଦୟା ମୟୀ ମା ଗୌରବ ମୟୀ
ମା ମୋ ଜନମ ଭୂଇଁ
ଜନମ ଲଭିଲି ତୋହର କୋଳରେ
ତୋର ପୁଣ୍ୟ ମାଟି ଛୁଇଁ ।୧।
ଜୟ ମା ଭାରତ ଭାବେ ସଦା ରତ
ଯୁଗେ ଯୁଗେ ମହାଯଶୀ
ତୋହର ଚରଣେ ଚରଣକୁ ଲକ୍ଷ
ଧ୍ୟପି ଉଠେ ଦେଶ ବାସୀ ।୨।
ପ୍ରାକୃତିକ ଶିକ୍ଷା ରହିଅଛି ପୂର
ଐଶ୍ୱର୍ଯ୍ୟ ଖଣି ଭଣ୍ଡାର
ଭାରତ ଦେଶର ସମ୍ପଦ ସକଳ
ଅକଳ ତୋ ଗଣ୍ଡାଗର ।୩।
ମହା ମହା ବୀର ପୁଅମାନେ ତୋର
ଦେଶ ମାନ ରକ୍ଷାପାଇଁ
ଲଢ଼ି ଲଢ଼ି କେତେ ଲଭିଛନ୍ତି ଜେତେ
ଇତିହାସେ ଅଛି ରହି ।୪।
ମହିମା ଶାଳିନୀ ଭାରତ ମାଳିନୀ
ବୃକ୍ଷ ସମ୍ପଦ ଉସର
କେତେ ନରନାରୀ ସୁଷମା ମଞ୍ଜୁଷା
ପାଳିଅଛୁ ମାତ ତବ ।୫।

ବୀର ପ୍ରସବଣୀ ଭାରତ ଜନନୀ
ମାଆ ଗୋ ମମତାମୟୀ
କେତେ ଭାଗ୍ୟବାନ ଶିଶୁ ତୋର ଧନ୍ୟ
ତୋ କୋଳରେ ଜାତହୋଇ ।୬
ତୋ ଚରଣ ରେଣୁ ଦିଅ ମା ଅଜାଡ଼ି
ସୁଯୋଗ୍ୟ ବୀର ସନ୍ତାନେ
ବିଜୟୀ ଦେଶ ଏସାରା ଜଗତେ
ତୋହର ମହିମା ଗଣେ ।୭।



## ଭାରତ ଗୌରବ

ଏହି ମୋ ଭାରତ ଭୂଇଁରେ ଏହି ମୋ ଭାରତ ଭୂଇଁ
ସର୍ବଶ୍ରେଷ୍ଠ ଦେଶ ଅମୂଲ୍ୟ ସମ୍ପଦ ସାରା ସଂସାରରେ ନାହିଁ
ଭାରତ ଜନନୀ ପରି ଶୋଭାମୟୀ
ଭୂମଣ୍ଡଳେ କେହି ନାହିଁ
ସ୍ନେହଭରେ ଆସି କୋଳେ ବସିଛନ୍ତି
ଭକ୍ତେ ଜଗତ ଗୋସାଇଁ ॥
କୋଟି କୋଟି ସୁତ ସୁତା ଧରି ମାତ
ମହା ଆନନ୍ଦେ ଖେଳାଇ
ପ୍ରାଣଠାରୁ ବଳି ଅଧିକ ସଂଖାଳି
ଆଦରେ ଅଛି ବଢ଼ାଇ ॥

ପବିତ୍ର ଭାରତ ସରଗୁ ସୁନ୍ଦର
ପ୍ରିୟ ମୋର ସ୍ନେହମୟୀ
ତାହାଠାରୁ ବଳି କିଏଅଛି ପ୍ରାଣି
ସାରା ଜଗତରେ କାହିଁ ॥

ସ୍ୱୟଂ ସୀତାରାମ ବିଜେ କରିଥିଲେ
ଆହା କି ପବିତ୍ରମୟୀ
ଜମ୍ବୁବତୀ ସହ ଶୁଭ ପରିଣୟ
ହୋଇଥିଲେ ସେ କହ୍ନାଇ

ପାର୍ଥ ପାଞ୍ଚବୀର କରିଲେ ବିହାର
ପବିତ୍ର ଭାରତ ଭୂଇଁ
ଲେଖିଥିଲା ବିଧି ଦେଖିବାକୁ ଏହି
କେତେ ଭାଗ୍ୟବାନ ମୁହିଁ ॥

ଏ ଦେଶେ ବିରାଟ ଋତୁଲୀଳା ଠାଇ
ଧରା ଧାମରେ କେ ନାହିଁ ॥
ଉତ୍କୃଷ୍ଟ କଳାରେ ଧର୍ମ ସଂସ୍କୃତିରେ
ଏ ଦେଶ ପରସ୍ଥ ନାହିଁ

ଏ ପୁଣ୍ୟ ଭାରତେ କବି କଳାକାର
ତୋ ଗର୍ଭରୁ ଜାତ ହୋଇ ॥
କେତେ ଭାଗ୍ୟବାନ ହୋଇଲେ ମହାନ
ଜଗତେ ଉପମା ନାହିଁ

ଗୋପ, ନୀଳକଣ୍ଠ ହରିହର କୃପାସିନ୍ଧୁ,
ଗୋଦାବରୀଶ ଯହିଁ
ଭାରତରେ ବହୁ ଜାତି ଧର୍ମ ଭାଷା
କେଉଁଠାରେ ଦେଖାନାହିଁ ॥

ଧାନ ଭବ ଶଶୀ ଲେଖି ହୁଏ ଖୁସି
ତୋ ପାଦ ପଦ୍ମକୁ ଛୁଇଁ
ସକଳ ଗୁଣରେ ମାତ ପରିପୂର୍ଣ୍ଣ
କେ ବର୍ଣ୍ଣି ପାରିବ ନାହିଁ ।।



## ଭାରତ ମାତା

ରାଗ-କାମୋଦ

ଦୁଃଖପରେ କି ଦୁଃଖ ସହି ସହିଛୁ ମାତ
ସୁଖଶାନ୍ତ ନାହିଁ ତୋହର
ସର୍ବଦା ଭାବରେ ରତ ଥାଇ ଭାରତ ମାତ
କରିଛୁ ମହିମା ବିସ୍ତାର ଗୋ ସ୍ନେହମୟୀ
ତୋପୁଏ କେଡ଼େ ଭାଗ୍ୟବାନ
ରଖି ଅଛନ୍ତି ତୋ ସମ୍ମାନ
ଏ ସାରା ବ୍ରହ୍ମାଣ୍ଡରେ ତୋହର ନାଆଁ ପଡ଼େ
ନାହିଁ କେ ତୋ ଗୁଣ ସମାନ ଗୋ ସ୍ନେହମୟୀ ।୦।
ତୋର ଶୋଭା ବର୍ଣ୍ଣିନେ ସୁଷମା ଉପବନେ
ବିଭିନ୍ନ ରଙ୍ଗେ ଅଙ୍ଗଭରା
ନଦୀ କନ୍ଦର ମାଳ ମାଳ ଶଇ ସୁନ୍ଦର
ମଣ୍ଡି ପକାଏ ବସୁନ୍ଧରା ଗୋ ସ୍ନେହମୟୀ
ଅପୂର୍ବ ଶ୍ରୀଅଙ୍ଗ ତୋହର ଆହା!କ ରୂପ ମନୋହର
ତୋହର ସୁତ ସୁତା ହୋଇ ଜଗତେ ଜାତ
କାର୍ଯ୍ୟକୁ କରିଲେ ସାକାର ଗୋ ସ୍ନେହମୟୀ ।୧

ମାତ ସ୍ନେହ ବତ୍ସଳା    ତୋ ସମ୍ପଦ ପସରା
ବନ୍ଦେ ଶ୍ରୀ ଜଗତର ସାଇଁ
ଜନମ ଲଭି ମୁହିଁ    ତୋହର କୋଳେ ରହି
ତୋର ପବିତ୍ର ମାଟି ଛୁଇଁ ଗୋ ସ୍ନେହମୟୀ
ତୋଠାରୁ ପାନକରି ତୃପ୍ତି ଲଭିଲି ମାଆଗୋ ମୁକତି
ତୋ ପବିତ୍ର ପୟର ବନ୍ଦାଉଛି ସାଗର
ଘୋଷଇ ସର୍ବଦା ଭାରତ ଗୋ ସ୍ନେହମୟୀ ।୨।

ଗୌରବ କଥାଶୁଣି    ମହିମା ହୁଏଗୁଣି
ଭୁଲି ଯାଏ ମୁଁ ଦୁଃଖ ଶୋକ
ତୋ ପୂରୁବ ଗୌରବ    ତୋ ସମ୍ପଦ ବିଭବ
ଶୁଣିମୁଁ ହୋଇଲି ହରଷ ଗୋ ସ୍ନେହମୟୀ
କେତେ ଯେ ବୀର ପୁଏ ତୋର
ତୋପାଇଁ କରିଲେ ସମର
ବାପୁଜୀ ଜବାହାର    ମାତୃଭୂମି ଉଦ୍ଧାର
ତୋଜୀବନ କଲେ ସଫଳ ଗୋ ସ୍ନେହମୟୀ ।୩।

ବୀର ପୁତ୍ର ସୁଭାଷ    ରଖିଗଲେ ତୋ ଯଶ
ତୋହର ଅପାର ମହିମା
ଯଶ ଭାରତ ତୋର    ଘୋଷୁ ଅଛି ସଂସାର
ତୋସମ ନାହିଁ କେ ଉପମା ଗୋ ସ୍ନେହମୟୀ
ପବିତ୍ର ହୃଦୟୁ ନିର୍ମଳ ଦୁର୍ବାଦଳ ଶୋଭି ଶରୀର
ସାରା ବ୍ରହ୍ମାଣ୍ଡ ପାଳି ତୋର ଗୁଣ ସୁମରି
ବିଶାଳ ଭାରତ ସକଳ ଗୋ ସ୍ନେହମୟୀ ।୪।



## ପ୍ରକୃତ ମାଧୁର୍ଯ୍ୟ

ଜୟ ମା ଭାରତ ଭୂଇଁ ସାରା ସଂସାରରେ
ଏଦେଶ ପରପ୍ରେ ଦେଶ ଆଉ କାହିଁ ନାହିଁ । (ଘୋଷା)
ମୁକୁଟ ଯାହାର ଶୁଭ୍ର ହିମାଚଳ
ପାଦ ଧୋଇଦଏ ମହୋଦଧି ଜଳ
ପବିତ୍ର ଭାରତେ ଦେବାଦେବୀ ଯେତେ
ବିଜେ ଜଗତ ଗୋସାଇଁ ।୧।
ତିରଙ୍ଗୀ ପତାକା ଉଡୁଅଛି ଯହିଁ
ଅଶୋକ ସ୍ତମ୍ଭ ସୁଶଙ୍କେତ ରହି
ଦୟା ପ୍ରେମ ଧର୍ମ ଅଖିଳ ଭାରତେ
ସବୁର ଦେଶର ପାଇଁ ।୨।
ନାନା ଜାତି ଫୁଲ ଫଳ ଏହି ଦେଶେ
କମଳ ସୌନ୍ଦର୍ଯ୍ୟ ଦେଶରେ ବିକାଶେ
ମୟୁର କୋକିଳ ଶୁକ ପିକ ଆଦି
ସୌନ୍ଦର୍ଯ୍ୟ ଦିଏ ବଢ଼ାଇ ।୩।
ବ୍ୟାଘ୍ର, ସିଂହ, ହସ୍ତୀ ଗୋଜାତି ମହିଷି
ଶିକ୍ଷା, ସ୍ୱାସ୍ଥ୍ୟ କୃଷି ଦେଶ ଉଠେ ହସି
ଅସ୍ତ୍ର ରତ୍ନ ଆଦି ରଖିଛି ସମ୍ପାଦି
ପାଳଅଛି ସ୍ନେହମୟୀ ।୪।
ଶ୍ରୀ କ୍ଷେତ୍ର ଯାହାର ଶ୍ରୀଧାମେ ସାର
ବୃନ୍ଦାବନ ଦ୍ୱାରକା ରାମେଶ୍ୱର
ଅଯୋଧ୍ୟା ମଥୁରା ଗୟା ବଦ୍ରିନାଥ
ରାମ କୃଷ୍ଣ ଜନ୍ମ ଭୂଇଁ ।୫।

ଗଙ୍ଗା, ଯମୁନା   ସିନ୍ଧୁ, ବ୍ରହ୍ମପୁତ୍ର
ସରସ୍ୱତୀ ନଦୀ ତ୍ରୀବେଣୀ ପବିତ୍ର
ସାହିତ୍ୟ ସଂସ୍କୃତ   ମୌଳିକ ଭାଷା
ତାହାପରି ନୁହେଁ କେହି ।୬।
ପୃଥ୍ୱୀବିଜ ରାଜା   ବିକ୍ରମାଦିତ୍ୟ
ପୃଥିବୀରେ ଥିଲେ ସ୍ୱାଧୀନ ଆଦିତ୍ୟ
ଜାନକୀ ସାବିତ୍ରୀ   ପଦ୍ମିନୀ ସତୀ
ବୀରାଙ୍ଗନା ଲକ୍ଷ୍ମୀବାଈ ।୭।
ମହାବୀର ବୁଦ୍ଧ   ନାନକ ଚୈତନ୍ୟ
ଶଙ୍କର ଧରମ ଗୁରୁ ରୂପେ ଗଣ୍ୟ
ଥିଲା ଅନ୍ଧକାର   ଦେଖାଇ ସୁପଥ
ଭାରତେ ଆଲୋକ ଦେଇ ।୮।
ବାଲ୍ମିକି ବେଦ-   ବ୍ୟାସ କାଳି ଦାସ
ଶୁଦ୍ରମୁନି ଆଦି ଯାର ଛାତ୍ର ଶିଷ୍ୟ
ତୁଳସୀ ସହିତ   ମିଶିଣ ହରିତ
ରାମାୟଣ ଥିଲେ ଗାଇ ।୯।
ଗାନ୍ଧୀ ଜବାହର   ସୁଭାଷ ପଟେଲ
ସୁଯୋଗ୍ୟ ସନ୍ତାନ ହୋଇ ଭୋଗି ଜେଲ
ବ୍ରିଟିଶ କେଶରୀ   ସଙ୍ଗେ ଯୁଦ୍ଧକରି
ଗଲା ଭାରତରୁ ପଳାଇ ।୧୦।
ବିଶାଳ ଭାରତ   କୋଟି ସୁତାସୁତ
ପାକ ଆକ୍ରମଣ କଲା ପ୍ରତିହତ
ଖଣ୍ଡି ଶିର ଦୁଃଖ   ମଣ୍ଡିଲୁ ଭାରତ
ମହା ଶାନ୍ତି ସୁଖ ଦେଇ ।୧୧।

## ସୁନାର ଦେଶ ଭାରତ

ଭାରତର ଶିରୀ ବଇକୁଣ୍ଠ ପୁରୀ
ଶ୍ରୀ ଜଗନ୍ନାଥଙ୍କ ଦେଶ
ବୃନ୍ଦ ଶଙ୍ଖ କଳା ବକଣି ଉଠଇ
ଝୁରଇ ଦେଶ ବଦେଶ ।୧।

ସବୁଜ ରଙ୍ଗରେ ଶୋଭା ଗୃହୁସ୍ଥରେ
ମଣ୍ଡି ପକାଉଛୁ ବେଶ
ବୃନ୍ଦ କଳା ଶଙ୍ଖ ଦେଖିଣ ବଶଙ୍ଖ
ସାରା ଦୁନିଆ ହରଷ ।୨।

ନାନା ରୂପ ଦେଇ କବିଛନ୍ତି ଗାଇ
ତୋ ଶୋଭା ବର୍ଣ୍ଣନା କରି
ନାହିଁ ନଥିବକେ ତୋର ସମତୁଲ
କେଉଁ ଗୁଣ ହେବ ସରି ।୩।

ଗୋରା ଶାସନର ଅବସାନ ପରେ
ରାଜା ରାଇଜ ଛାଡ଼ିଲେ
ଛତିଶ ପାଟକେ ରଜା ମହାରଜା
କରମ ଠୁକ ରହିଲେ ।୪।

ଭାରତରେ ଥିଲା ଯେତେ ଗଡ଼ ରାଜ୍ୟ
ଗଲା ରଜାଙ୍କର ଠାଣ
ଯିଏ ପବନକୁ ଫାସ ବାନ୍ଧୁଥିଲା
ଛାଡ଼ିଲେ କ୍ଷମତା ପଣ ।୫।

ସର୍ଦ୍ଦାର ପଟେଲ ଲୌହର ମାନବ
ଦେଶର ଦାୟିତ୍ୱ ନେଲେ
ଚବଶ ଛବଶ ଗଡ଼ଜାତ ରାଜ୍ୟ
ଭାରତରେ ମିଶାଇଲେ ।୬।
ତୋ ଗରଭୁ ଜାତ ସୁଯୋଗ୍ୟ ସନ୍ତାନ
ଲଭି କେଡ଼େ ଭାଗ୍ୟବାନ
ଧନ୍ୟମା ଭାରତ ଲଭିଛୁ ସାଫଲ୍ୟ
ସର୍ବ ଗୁଣରେ ମହାନ ।୭।
ଶ୍ରୀ ମହାପ୍ରସାଦ ଅମୂଲ୍ୟ ସମ୍ପଦ
ଯାହାଙ୍କ ସାର ସଂସାରେ
ଯାଲାଗି ଓଡ଼ିଆ ଗରବେ ବଡ଼ିଆ
ଖ୍ୟାତ ଲଭି ଜଗତରେ ।୮।
କାଳ କାଳ ଧରି ଭାରତ ଜନନୀ
ଭାରତ ମଉଡ଼ ମଣି
କ ବର୍ଣ୍ଣିବ ତୋର ମହିମା ଅପାର
ଜୟ ମା ଭାରତ ରାଣୀ ।୯।
ଭାରତ ଦେଶରେ ପଚାଶି ରାଇଜ
ହୋଇଅଛୁ ରାଜଧାନୀ
ସୁଖ ଶାନ୍ତି ଦେଇ ଅଛୁ ସ୍ନେହମୟୀ
ଧନ୍ୟ ଭରତ ଜନନୀ ।୧୦।



## ଗୌରବମୟୀ ଭାରତ ଜନନୀ

ଭାରତ ଜନମ ଭୂଇଁରେ ଭାରତ ଜନମ ଭୂଇଁ
ମୋ ଦେଶ ସମାନେ ନାହାନ୍ତି କେହିରେ
ସଜେ ଜଗତ ଗୋସାଇଁ ।୧।

ମୋ ଦେଶ ସୁବର୍ଣ୍ଣ ଦେଶ ଧାତବ ରତନ ଖଣି ପରିପୂର୍ଣ୍ଣ
କଳ ନୁହେଁ ତାର ଯଶ ।୨।

ମୋ ଦେଶ ଢଅଁ ଦେଉଳ ପୃଥିବୀ ମଧ୍ୟରେ ଅଟଇ ସାର
ପବିତ୍ର ଭୂମି ଆମର ।୩।

କୋଣାର୍କ ଚନ୍ଦ୍ରଭାଗା ଦେଶର ଅପୂର୍ବ ସୁନ୍ଦର ଶୋଭା
ହିମାଳୟ ତାର ଚଭା ।୪।

ବ୍ରହ୍ମପୁତ୍ର ସିନ୍ଧୁ ନଦୀ ଦେଶପାଶେ ଖେଳୁ ଅଛି ଜଳଧି
ନୃତ୍ୟ କରି ବନ୍ଦାଉଛି ।୫।

ଗଙ୍ଗା ଯମୁନାର ଧାର ଭାରତ ମାତାର ଗଳାର ହାର
ବିରାଜେ ବକ୍ଷ ଦେଶର ।୬।

ଏ ଦେଶର କଳାକାର ସୁନ୍ଦର ଠାଣିରେ ଗଢ଼ି ମନ୍ଦିର
ଦେଶରେ ହେଲେ ଅମର ।୭।

ମହା ମହା କବିବର ଭାରତ ମାତାର ବନ୍ଧ ପସ୍ତର
କୀର୍ତ୍ତି ଅଛି କାଳ ଭାଳ ।୮।

ଏ ଦେଶର ମହାବୀର ବିଦେଶୀଙ୍କୁ ନ କରେ ଖାତର
ହିନ୍ଦୁଆ ଭାରତର ।୯।

ହିମାଳୟ କୁମାରିକା ଯଶ କୀର୍ତ୍ତି ଗୁଣ ଘୋଷଇ ଏକା
ସଂସାରେ ପଡ଼ଇ ଡକା ।୧୦।

ଦେଶ ମନ୍ଦିମା ଶକ୍ତ ଏକତାର ବଳ କରେ ବସନ୍ତ
ଜନେ ଲଭ୍ଧ ସୁଖ ଶାନ୍ତି ।୧୧।
ଏ ଦେଶ ସନ୍ତାନ ଯେତେ ଜୟଗୀତ ଗାଇ ଆନନ୍ଦ ଚିତ୍ତେ
ଯଶ ଉଡ଼ଇ ଜଗତେ ।୧୨।



## ଭାରତରେ ବୃହତ୍ତ

ରାଗ-ରସକୁଲ୍ୟା

ବୃହତ୍ତମ ସହର କଲିକତା
ବଡ଼ ପୁସ୍ତକାଗାର କଲିକତା
ବଡ଼ ଗୋଦାବରୀ ଗଙ୍ଗା କାବେରୀ
ବଇକୁଣ୍ଠ ପୁର ଶ୍ରୀକ୍ଷେତ୍ର ପୁରୀ
ବୃହତ ମଧ୍ୟ ପ୍ରଦେଶ ଯେ
ବୃଷ୍ଟି ବହୁଳ ଅଞ୍ଚଳ ଚେରାପୁଞ୍ଜି
ବଡ଼ ଉତ୍ତର ପ୍ରଦେଶ ଯେ ।୧।
ବଡ଼ ଜଙ୍ଗଲ ପ୍ରଦେଶ ଆସାମ
ଶୋଣ ନଦୀର ପୋଲ୍ ଯାହା ଉତ୍ତମ
ପୁରୀ ଗ୍ରାଣ୍ଡ ଟ୍ରଙ୍କ ରୋଡ଼ ବଡ଼ ସଡ଼କ
ହାବୁଡ଼ାର ପ୍ଲାଟ ଫର୍ମ ଚମକ
ବଡ଼ ମସଜିଦ ଦିଲ୍ଲୀ ଯେ
ବଡ଼ ଚିଡ଼ିଆଖାନାଯେ କଲିକତା
ପଶ୍ଚିମ ବଙ୍ଗ ଦାର୍ଜିଲିଂ ଯେ ।୨।

କଲିକତା ବୃହତ୍ତ ଯାଦୁଘର
ଉଚ୍ଚତମ ମୂର୍ତ୍ତି ଗୋମଟେଶ୍ୱର
ଉଚ୍ଚ ନଦୀବନ୍ଧ ଭାକ୍ରାନଙ୍ଗଲ
ବୃହତ ପଶୁ ସୋନପୁର ମେଳ
ଭାରତେ ସ୍ୱର୍ଗ କାଶ୍ମୀର ଯେ
ଦୀର୍ଘତମ ନଦୀ ବନ୍ଧ ହୀରାକୁଦ
ବୃହତ୍ତ ଜଳ ଭଣ୍ଡାର ଯେ ।୩।
ହିମାଳୟ ପର୍ବତ ବୃହତ୍ତମ
ଏଭାରେଷ୍ଟ ଶୃଙ୍ଗରେ ଉଚ୍ଚତମ
ବୃହତ୍ତମ ଗୁମ୍ଫା ଅଟେ ଏଲୋର
ଉଚ୍ଚତମ ଫାଟକ ଫତେପୁର
ତ୍ରିକୋଣ ଭୂମି ସୁନ୍ଦର ଯେ
ପ୍ରଥମ ନୋବେଲ ପ୍ରାଇଜ ବିଜେତା
ରବୀନ୍ଦ୍ରନାଥ ଠାକୁର ଯେ ।୪।



# ଭାରତର ସଭ୍ୟତା

ରାଗ-ରସକୁଲ୍ୟା

ଉତ୍ତର ପଶ୍ଚିମୁ ଆର୍ଯ୍ୟ ଆସିଲେ ଭାରତ ବରଷେ ପ୍ରବେଶ କଲେ
ଇଉରୋପ ଇରାକ ଏସିଆରୁ ମଧ୍ୟ ଆଫଗାନ ଆଦି ଅଞ୍ଚଳରୁ ସେ
ବୁଲି ବୁଲି ଭ୍ରମିଥିଲେ ଯେ
ଉର୍ବର ମାଟି ପର୍ବତ ନଦୀ ଦେଖି ଆର୍ଯ୍ୟମାନେ ବାସକଲେ ଯେ ॥
ଗୋପାଳନ କୃଷି ଥିଲା ତାଙ୍କର ଜାଣିଥିଲେ ଧାତୁର ବ୍ୟବହାର
ଗୋରା ବଳିଷ୍ଠ ସବଳ ସୁନ୍ଦର ନୀଳବର୍ଣ୍ଣ ଆଖିମାନ ତାଙ୍କର ସେ
ଭାଷାଟି ସଂସ୍କୃତ ଥିଲା ଯେ
ତାଙ୍କ ଦ୍ୱାରା ବେଦମାନ ସୃଷ୍ଟି ହେଲା ଜାତିର ଭେଦ ନଥିଲା ଯେ
ପ୍ରତ୍ନତତ୍ତ୍ୱ ବିଭାଗ ଚେଷ୍ଟାକଲା ଦ୍ରାବିଡ଼ ସଭ୍ୟତା ଭଲୁ ଖୋଳିଲା
ଆର୍ଯ୍ୟ ମାନଙ୍କ ଆସିବା ପୂର୍ବରୁ ବାସ କରନ୍ତି ଦ୍ରାବିଡ଼ ଆଗରୁ
କୃଷ୍ଣକାୟ ବପୁ ଥିଲେ ଯେ
ଦ୍ରାବିଡ଼ ମାନଙ୍କୁ ପରାସ୍ତ କରିଣ ଆର୍ଯ୍ୟ ମାନେ ବାସ କଲେ ଯେ
ଦ୍ରାବିଡ଼ ଆର୍ଯ୍ୟଙ୍କ ହେଲା ସଂଘର୍ଷ ଆର୍ଯ୍ୟ ଜିଣିକଲେ ଉତ୍ତରେ ବାସ
ଦ୍ରାବିଡ଼ ଦକ୍ଷିଣକୁ ଚାଲିଗଲେ ଚୋଳ ଚେର ପାଣ୍ଡ୍ୟରାଜ୍ୟଗଢ଼ିଲେସେ
ସୁଖେ ବସି ବାସ କଲେ ଯେ
ଦକ୍ଷିଣ ଭାରତାଞ୍ଚଳେ ରାଜାହୋଇ ସୁଖେ ପ୍ରଜାଙ୍କୁ ପାଳିଲେ ଯେ
ଆର୍ଯ୍ୟମାନେ ଥିଲେ ଗୋଟିଏ ଜାତି ସର୍ବେ ମିଳିମିଶି କଲେ ରାଜୁତି
ଦିନକୁ ଦିନ କାର୍ଯ୍ୟ ବୃଦ୍ଧି ହେଲା କର୍ମରେ ବିଶୃଙ୍ଖଳା ଦେଖାଗଲାଯେ
କରିବାକୁ ସମାଧାନ ଯେ
ବ୍ରାହ୍ମଣ କ୍ଷତ୍ରୀୟ ବୈଶ୍ୟ ଶୁଦ୍ର ଆଦି ଚାରି ଜାତି ହେଲେ ଜାଣଯେ



## ଭାରତ ରାଜବଂଶର ରାଜତ୍ୱ

ରାଗ-ରସକୁଲ୍ୟା

ମୌର୍ଯ୍ୟ ବଂଶ ଚନ୍ଦ୍ରଗୁପ୍ତ ଅଶୋକ
କୁଶାଣ ବଂଶର ରାଜା କନିଷ୍କ
ଗୁପ୍ତବଂଶ ରାଜା ବିକ୍ରମାଦିତ୍ୟ
ସ୍ମରଣୀୟ ଥିଲେ ଶ୍ରୀ ଚନ୍ଦ୍ରଗୁପ୍ତ ସେ
କଲେ ଭାରତ ଶାସନ ଯେ
ବର୍ଦ୍ଧନ ବଂଶର ଶ୍ରୀ ହର୍ଷବର୍ଦ୍ଧନ
ଦାସ ବଂଶ କୁତବୁଦ୍ଦିନ ଯେ ॥

ଖିଲିଜି ବଂଶର ଆଲ୍ଲାଉଦ୍ଦିନ
ତୋଗଲକ ମହମ୍ମଦ ରାଜନ
ଲୋଧି ବଂଶ ଇବ୍ରାହିମ୍ ଲୋଧି
ମୋଗଲ ବଂଶ ପାଇ ରାଜଗାଦି
ଯୁଦ୍ଧରେ ସେ ଗଲେ ଜିତି ଯେ
ହୁମାୟୁନ ଆକବର ଜାହାଙ୍ଗୀର
ଶାହାଜାହାନ ରାଜୁତି ଯେ ॥

ଏମାନେ ଥିଲେ ରାଜା ଭାରତର
ବାବର ଆଉରଙ୍ଗ ବାହାଦୁର
ଭାରତ ଶାସନ ଚଳାଇ ଥିଲେ
କେତେ ଝଡ଼ ଝଞ୍ଜା ସହି ପାଳିଲେ ସେ
ରକ୍ଷା କରିଲେ ଭାରତ ଯେ
ଘୋର ରଣ କରି ଭାରତ ଉଦ୍ଧାରି
କାଳ କାଳ ଅଛି ଖ୍ୟାତ ଯେ ॥

ଶେଷ ଶାସକ ବ୍ରିଟିଶ ସର୍କାର
ଛାପାଖାନା ଜନ ଗଣନା କାର
ସତୀଦାହ ପ୍ରଥାକୁ ବନ୍ଦକଲେ
ଡାକ ତାର ଓ ରେଳଚଳାଇଲେ ସେ
ଧନ ରତ୍ନ ବୋହି ନେଲେ ଯେ
ସ୍ୱାଧୀନ ଶାସନ ବର୍ତ୍ତର ବଶାଗ
କଲେଜ ଆରମ୍ଭ କଲେ ଯେ ॥
ଗୋରା କବଳୁ ଉଦ୍ଧାର ଭାରତ
ସ୍ୱାଧୀନ ହେଲା ମିଶି ଗଡ଼ଜାତ
ଅଗଷ୍ଟ ମାସ ପନ୍ଦର ତାରିଖ
ଚଉଦନ ଥାଇଁ ଭାରତ ଠେକ ସେ
ଜାନୁଆରୀ ଛବିଶିରେ ଯେ
ଘୋଷଣା କରି ସାର୍ବଭୌମ କ୍ଷମତା
ଦେଶ ଚଳୁଛି ଶାନ୍ତିରେ ଯେ ॥



# ଭାରତର ରାଜ୍ୟ ଓ ରାଜଧାନୀ

ରାଗ-ରାମକେଶୀ

ଭାରତ ଦେଶର ଅନେକ ରାଜଧାନୀ ସୁନ୍ଦର
କେତେ ଭାଷା ନାନା ଜାତିର ମାନବ ଚଳାଚଳ ।
ଆନ୍ଧ୍ର ପ୍ରଦେଶେ ରାଜଧାନୀ ଅଟେ ହାଇଦ୍ରାବାଦ
ଆସାମ ରାଜ୍ୟେ ରାଜଧାନୀ ଡ଼ିସ୍ପୁର ସମ୍ପଦ ।
ବିହାର ପ୍ରଦେଶେ ପାଟଣା ରାଜଧାନୀ କି ଶୋଭା
ଗୁଜୁରାଟରେ ଗାନ୍ଧୀନଗର ଦେଖି ଲାଗଇ ଲୋଭା ।
ହରିଆନାରେ ଚଣ୍ଡିଗଡ଼ ଶୋଭଇ ରାଜଧାନୀ
ହିମାଚଳ ରାଜ୍ୟେ ସିମିଳା ରାଜଇ ରାଜଧାନୀ ।
ଜାମ୍ମୁ କାଶ୍ମିର ରାଜଧାନୀ ବିରାଜେ ଶ୍ରୀନଗର
କର୍ଣ୍ଣାଟକର ରାଜଧାନୀ ଶୋଭଇ ବାଙ୍ଗାଲୋର ।

କେରଳ ପ୍ରଦେଶେ ତ୍ରିଭେନ୍ଦ୍ରମ ରାଜଧାନୀ ସୁନ୍ଦର
ମଧ୍ୟ ପ୍ରଦେଶରେ ଶୋଭଇ ରାଜଧାନୀ ଭୋପାଳ ।

ମହାରାଷ୍ଟ୍ର ରାଜ୍ୟେ ବମ୍ବେଇ ଇମ୍ଫାଲ ମଣିପୁରେ
ମେଘାଳୟ ରାଜ୍ୟେ ରାଜଧାନୀ ଶିଲଂ ଶୋଭା ପାଏରେ ।

ନାଗାଲାଣ୍ଡ ରାଜ୍ୟେ କୋହିମା ରାଜଧାନୀ ରାଜଇ
ଓଡ଼ିଶା ପ୍ରଦେଶେ ଭୁବନେଶ୍ୱର ହସି ଉଠଇ ।

ପଞ୍ଜାବ ରାଜ୍ୟେ ଚଣ୍ଡୀଗଡ଼ ଦିଶେ କି ମନୋହର
ରାଜସ୍ଥାନରେ ରାଜଧାନୀ ବିରାଜେ ଜୟପୁର ।

ସିକମ୍ ରାଜ୍ୟେ ଗ୍ୟାଙ୍ଗଟକ୍ ତାମିଲନାଡ଼ୁ ମାଡ୍ରାସ
ତ୍ରିପୁରାରେ ଅଗରତାଲ୍ ରାଜଧାନୀ ସରସ ।

ଉତ୍ତର ପ୍ରଦେଶରେ ଲକ୍ଷ୍ନୌ ରାଜଧାନୀ ରାଜଇ
ପଶ୍ଚିମବଙ୍ଗ ରାଜଧାନୀ କଲିକତା ଶୋଭଇ ।
ମିଜୋରାମରେ ଆଇଜଲ ରାଜଧାନୀ ସୁନ୍ଦର
ଅରୁଣାଚଳ ରାଇଜରେ ଶୋଭେ ଇଟାନଗର ।
ଗୋଆ ପ୍ରଦେଶେ ରାଜଧାନୀ ବିରାଜଇ ପାନ୍‌ଜି
ଭାରତ ଦେଶ ରାଇଜେ ଶୋଭା ଉଠେ ବିରାଜି ।
କୋଟି କୋଟି ସୁତ ସୁତାଙ୍କୁ ନିଜ କୋଳରେ ଧରି
ଭାରତ ଜନନୀ ପାଳୁଛି କେଡ଼େ ଯତନ କରି ।



## ଭାରତର ପ୍ରସିଦ୍ଧ ତୀର୍ଥ

ରାଗ-ରସକୁଲ୍ୟା

ଦେଶେ ଭୂଷଧାମ ପୁରୀ ଦ୍ୱାରକା
ଶୋଭାପାଏ ରାମେଶ୍ୱର ବଦ୍ରିକା
ବଦ୍ରିକାରେ ବିଜେ ବଦ୍ରିନାଥ
ଦ୍ୱାରକାରେ ବିଜେ ଦ୍ୱାରକା ନାଥ
ରାମେଶ୍ୱରେ ରାମନାଥ ଯେ

ଶ୍ରୀ କ୍ଷେତ୍ରରେ ବିଜେ ଜଗତର ନାଥ
ପବିତ୍ର ଅଟେ ଭାରତ ଯେ
ଗୟା, ବୁଦ୍ଧଗୟା ଗଙ୍ଗା ଯମୁନା
ସରସ୍ୱତୀ ଘାଟ ତ୍ରିବେଣୀ ସିନା
ପ୍ରୟାଗ ନାମେ ହୋଇଛି ବିଖ୍ୟାତ
ପାଦଗୟା ଅଜର ନିରୂପିତ
ଭୁବନେଶ୍ୱରରେ ଶିବ ଯେ
ରାଜ ସ୍ଥାନରେ ଶ୍ରୀ ଶୈଳ ନିବାଧ
ଗୋମତେଶ୍ୱର ବିଭବ ଯେ ।



## ଭାରତ ପ୍ରତିଭା

ରାଗ-ରସକୁଲ୍ୟା

ହସି ଉଠୁଥିଲା ଭାରତ ଦେଶ
ମହା ପଣ୍ଡିତ ଥିଲେ କାଳ ଦାସ
ବରରୁଚି ଶ୍ରୀ ବରାହ ମିହିର
ବେତାଳ ଭଟ୍ଟ ଶ୍ରୀ ଘଟକର୍ପର
ଥିଲେ ଶଙ୍କୁ ଧନ୍ୱନ୍ତରୀ ଯେ

ଶ୍ରୀ କ୍ଷପଣକ ଅମରସିଂହ ଥିଲେ
ନବରତ୍ନ ଏକ୍ଷପର ଯେ ॥
ଗୌତମ ବୁଦ୍ଧ ମହାବୀର ଅଶୋକ
ଆର୍ଯ୍ୟଭଟ୍ଟ ବାଣ ଭଟ୍ଟ ଗୃଣକ୍ୟ
ଅଇର ବଂଶ ଭ୍ରାନ୍ତ ଖାରବେଳ
ହର୍ଷବର୍ଦ୍ଧନ ଯେ ବ୍ୟାସ ଭାସ୍କର
କାଳିଦାସ ଶ୍ରୀ ଚୈତନ୍ୟ ଯେ
ସୁଯୋଗ୍ୟ ଶିବାଜୀ ଅମର ପ୍ରଭାତ
ଅଟନ୍ତି ଯେ ପୁରାତନ ଯେ ॥
ଆଧୁନିକ ଯୁଗେ ମହାତ୍ମାଗାନ୍ଧୀ
ଅରବିନ୍ଦ ବିନୋବା ଋଷି ସିଦ୍ଧି
ଜବାହର ଲାଲ ସୁବାସବୋଷ
ରମଣ ବିବେକାନନ୍ଦଙ୍କ ଯଶ
ଶ୍ରୀ ରାଜା ରାମ ମୋହନ ଯେ
ରାଜ ଗୋପାଳଚାରୀ ଶ୍ରୀ ଗୋପବନ୍ଧୁ
ବାରିଷ୍ଟର ମଧୁସୂଦନ ଯେ ॥
ମହାତ୍ମା ଶ୍ରୀ ବାଳ ଗଙ୍ଗାଧର
ରବୀନ୍ଦ୍ରନାଥ ଲାଲ ବାହାଦୁର
ଗୋପାଳକୃଷ୍ଣ ଗୋଖେଲ ପଟେଲ
ଲାଲ ଲାଜପତ ରାୟ କୌଶଳ
ରାଜେନ୍ଦ୍ର ପ୍ରସାଦ କାମ ଯେ
ରାଧାକୃଷ୍ଣନ ମୋରାର୍ଜୀ ଦେଶାଇ
ଜଗତ୍ ଜୀବନ ରାମ ଯେ ॥

●

# ଶ୍ରୀ ମନ୍ଦିର ନିର୍ମାଣ

ଆହାକ ବଚନ ଶୋଭା ବଢ଼ ଦେଉଳ
ଗଢ଼ି ଯାଇଛନ୍ତି ଇନ୍ଦ୍ରଦ୍ୟୁମନ ବୀର
ଲକ୍ଷ ଲକ୍ଷ କାରିଗର ଡକାଇ କଲେ ହାଜର
ଦକ୍ଷ ଦକ୍ଷ ମହାଶିଳ୍ପୀ ହୋଇଲେ ଠୁଳ
ବଶାଶହେ ହାତ ହେବ ଦେଉଳ ଉଭା ରହିବ
ହସି ଉଠିବ ଜଗତେ ଶୋଭ୍ର ମନ୍ଦର
ବଉଳମାଳା ପଥର ଗଢ଼ା ହୋଇବ ସୁନ୍ଦର
ରାଜାଙ୍କ କଡ଼ା ଆଦେଶ ଏହି ପ୍ରକାର
ରଜାଙ୍କ ଆଦେଶ ପାଇ ଧତି ଜାଣ୍ଡି ବନ୍ଧୁଭାଇ
ଗ୍ରୀଷ୍ମ ବର୍ଷା ଶୀତ ସହି ବଢ଼େଇ କୁଳ
ଭିନ୍ନ ଭିନ୍ନ କାରୁକାର୍ଯ୍ୟ ମନ୍ଦର ଶୋଭ୍ର ବିରାଜେ
ଦଧି ନଉତି କଳସ ହେବ ସୁଢ଼ଳ ।୩।
ଧନକୁ ଚୁମ୍ବି କେତନ ଉଡୁଥିବ ଫନ ଫନ
ଗରବରେ ଡାକୁଥିବ ସାରା ସଂସାର
ଚୋଳାଇ ସାରି ମନ୍ଦର ଗଲେ ଇନ୍ଦ୍ରଦ୍ୟୁମ୍ନ ବୀର
ପ୍ରତିଷ୍ଠା କରିବାପାଇଁ ବ୍ରହ୍ମା ପାଶର
ବ୍ରହ୍ମାଙ୍କୁ ଆଣିବାପାଇଁ କେତେ ଯୁଗ ଗଲାବିତି
ସେ ସମୟେ ବାଲିପୋତି ଗଲା ଦେଉଳ
ଗାଲମାଧବ ଘୋଡ଼ାରେ ସେ ସମୟେ ଯାଉଥିଲେ
ଟାପ ବାଜିଲା ମାଟି ଚକର ଚଳେ
ଗାଲମାଧବ ଅପାର ବାଲିକ କଲେ ଉଦ୍ଧାର
ବ୍ରହ୍ମାଙ୍କୁ ଭାଷିଲେ ମୋର ଗଢ଼ା ଦେଉଳ

କିଏ ଅଛି ତୁମ ସାକ୍ଷୀ ଦେଖିଅଛି କାହା ଆଖି
ପ୍ରମାଣ ଦିଅନ୍ତୁ ଆଗେ ହୋଇ ହାଜର
ସାକ୍ଷୀଙ୍କ ପ୍ରମାଣ ପାଇ ବେଦବର କ୍ରୋଧହୋଇ
ମିଥ୍ୟାବାଦୀ ରଜା ବୋଲି କଲେ ଧିକ୍କାର
ଗାଲୁଆ ଗାଲମାଧବ ତୁମେ ଅପୂଜ୍ୟ ରହିବ
କ୍ରୋଧେ ବ୍ରହ୍ମା ଶାପ ଦେଲେ ହୋଇ ତତ୍ପର ।



## ଶ୍ରୀ ମନ୍ଦିର ବର୍ଣ୍ଣନା

ନୀଳାଚଳ ଶ୍ରୀ ମନ୍ଦିର କି ବଢ଼ିଆରେ
ଜଗା ବଳିଆ ସୁଭଦ୍ରା ବସେ ମନ୍ଦିରେ (ଘୋଷା)
ସୁରୁଚିର ଶ୍ରୀ ମନ୍ଦିର ଗଢ଼ିଅଛି ଶିଳ୍ପୀକାର
ହସି ଉଠୁଛି ଦେଉଳ ସାରା ସଂସାରେ ।
ବଡ଼ ଦେଉଳର ଶୋଭା ଦେଖି ଲାଗେ ମନଲୋଭା
ଘନକୁ ଚୁମ୍ବି ପତାକା ଉଡ଼ୁଅଛିରେ ।
ହିମାଳୟ କୁମାରିକା ପର୍ଯ୍ୟନ୍ତ ପଡ଼େ ଡଙ୍କା
ହାଉ ହାଉ ଗରଜୁଛି ବାରିଧି କୂଳେ ।
ଲକ୍ଷ୍ମୀ କମଳା ବିମଳା ପାଶେ କରୁଛନ୍ତି ଲୀଳା
ମୁଖ ସୌନ୍ଦର୍ଯ୍ୟ ସରସ କି ମନୋହରେ ।

ଉଡ଼େ ଗରବ କେତନ ପାପିଙ୍କ ପାପ ମୋଚନ
ଜଗତକୁ ଡାକୁଅଛି ନୀଳଶିଖରେ ।
କୋଟି କୋଟି ନରନାରୀ ପ୍ରଭୁଙ୍କୁ ଦର୍ଶନ କରି
ଦେଖି ପବନ ଲଭନ୍ତି ସୁଖ ଶାନ୍ତିରେ ।
ଦେଖି ଏ ଜନ ଜଗତ ଖଣ୍ଡି ଯାଏ ଚିର ଦୁଃଖ
ମଣ୍ଡି ପକାଏ ଶ୍ରୀ ମୁଖ ଶ୍ରୀ ମନ୍ଦରରେ ।
ଦର୍ଶନେ ଶାନ୍ତି ଲଭନ୍ତି ପାପ ମୋଚନ କରନ୍ତି
କୈବଲ୍ୟ କଣିକେ ପାଇଁ ଚିର ଯାତ୍ରାରେ ।
ଗଢ଼ି ଯାଇଛି ଓଡ଼ିଆ ଶ୍ରୀ ମନ୍ଦିର କି ବଢ଼ିଆ
ଉତ୍ସର୍ଗୀ ଦେଇଛି ପ୍ରାଣ ଦେଶ ପାଇଁରେ ।
ଏ ମର୍ତ୍ତ୍ୟ ବୈକୁଣ୍ଠ ପୁର ହସି ଉଠୁଛି ସଂସାର
ଧନ୍ୟ ଜଗତର ନାଥ ଏ ଜଗତରେ ।



## ଭାରତର ପ୍ରସିଦ୍ଧ ବିଶ୍ୱ ବିଦ୍ୟାଳୟ

ରାଗ-ରସକୁଲ୍ୟା

ଦେଶେ ପ୍ରାଚୀନ ବିଶ୍ୱ ବିଦ୍ୟାଳୟ
ତକ୍ଷଶିଳା ନାଳନ୍ଦା ଶୋଭାମୟ
ବିଶ୍ୱ ବିଦ୍ୟାଳୟ ବିକ୍ରମଶିଳା
ଲଳିତଗିରି ରତ୍ନଗିରି ମାଳାସେ
ଯେତେ ବିଶ୍ୱ ବିଦ୍ୟାଳୟ ଯେ

ଦୁର୍ଗାପୁରରେ ପୋଷ୍ଟ ହୋଇଥିଲେ ମଧ୍ୟ
ଇତିହାସ ର ଅକ୍ଷୟ ଯେ
ଭାରତ ଦେଶେ ବିଶ୍ୱ ବିଦ୍ୟାଳୟ
ଶୋଭେ ଉତ୍କଳ ବିଶ୍ୱ ବିଦ୍ୟାଳୟ
ପଶ୍ଚିମ ବଙ୍ଗରେ ଯେ କଲିକତା
ତାମିଲନାଡ଼ୁ ମାନ୍ଦ୍ରାଜ ଶୋଭିତା ଯେ
ମହାରାଷ୍ଟ୍ରେରେ ବମ୍ବେଇ ଯେ
ଉତ୍ତର ପ୍ରଦେଶରେ ଏଲ୍ହାବାଦ ଯେ
ବିହାରଠାରେ ପାଟଣା ଯେ ॥
ଉତ୍ତରପ୍ରଦେଶେ ହିନ୍ଦୁ ଆଳୟ
ଆନ୍ଧ୍ର ପ୍ରଦେଶେ ଓସ୍‌ମାନୟ
ଉତ୍ତର ପ୍ରଦେଶେ ଯେ ଆଲିଗଡ଼
ମଧ୍ୟ ପ୍ରଦେଶରେ ସାଗର ବଡ
ଆସାମ ଗୌହାଟି ସାର ଯେ
ପଶ୍ଚିମ ବଙ୍ଗରେ ବିଶ୍ୱ ଭାରତୀ ଯେ
ଯାଦବପୁର ସୁନ୍ଦର ଯେ ॥
ତ୍ରାଭଙ୍କୋର ବିଦ୍ୟାଳୟ କେରଳ
ଖ୍ୟାତ ଲଭିଛି ଭାରତେ ସୁନ୍ଦର
ତାମିଲନାଡ଼ୁ ଆନ୍ନାଇ ମଲାଇ
ଜାମିଆ ମିଲିଆ ଦିଲ୍ଲୀ ଶୋଭଇ
ଏପରି ନାନା ପ୍ରକାର ଯେ
ଶିକ୍ଷାଦାନ ପାଇଁ ଭାରତେ ବିଭିନ୍ନ
ବିଶ୍ୱ ବିଦ୍ୟାଳୟ ସାର ଯେ ॥



# ମ ହା ପୁ ରୁ ଷ

ଏହି ଭାରତ ସୁନ୍ଦର ଜଗତେ
ଯାନାହିଁ ଜଗତେ ଅଛି ଭାରତେ
ଉତ୍ତରରେ ହିମାଳୟ ପର୍ବତ
ଭାରତ ମାତା ମୁକୁଟ ଶୋଭିତ ସେ
ଖେଳଇ ମହାସାଗର ଯେ
କଳ କଳ ନାଦ କରି ବନ୍ଦାଉଛି
ଭାରତ ମାତା ପୟର ଯେ ॥
କବିର ରାମ କୃଷ୍ଣ ପରମ ହଂସ
ଶ୍ରୀ ରାମାନୁଜ ଯେ ବିବେକାନନ୍ଦ
ଶ୍ରୀ ଚୈତନ୍ୟ ଶ୍ରୀ ଅନୁକୂଳ ଚନ୍ଦ୍ର
ସତ୍ୟସାଇ ବାବା ଶ୍ରୀ ଅରବିନ୍ଦ ସେ
ଭାରତେ ପ୍ରସିଦ୍ଧ ଥିଲେ ଯେ
ଶ୍ରୀ ବୁଦ୍ଧ ନାନକ ଧର୍ମ ପ୍ରଚାରକ
ଦେଶର ଟେକ ରଖିଲେ ଯେ ॥
ଗାନ୍ଧି ଜବାହ ଲାଲ ବାହାଦୁର
ସୁଭାଷ ବୋଷ ସର୍ଦ୍ଦାର ପଟେଲ
ଶ୍ରୀ ରାଜଗୋପାଳ ଚାରି ମହାତ୍ମା
ଏମାନେ ଭାରତ ପବିତ୍ର ଆତ୍ମା ସେ
ଥିଲେ ସେ ମହାପୁରୁଷ ଯେ
ସାହାସୀ ଚତୁର ଜ୍ଞାନେ ଧୁରନ୍ଧର
ହସି ଉଠୁଥିଲା ଦେଶ ଯେ ॥



# ଭାରତର ପ୍ରସିଦ୍ଧ କବି

ରାଗ-ରସକୁଲ୍ୟା

ବାଣ ସଂସ୍କୃତର ଗଦ୍ୟ ଲେଖକ
କବି ଭାରବୀ ସଂସ୍କୃତ କୀରାତ
ଶ୍ରୀହର୍ଷ ଜୟଦେବ ଗୀତ ଗୋବିନ୍ଦ
କାଳିଦାସ ରଘୁବଂଶ ମେଘଦୂତ
ଅଭିଜ୍ଞାନ ଶକୁନ୍ତଳ ଯେ
କୁମାର ସମ୍ଭବ ବିକ୍ରମୋର୍ବଶୀ
ଶ୍ରେଷ୍ଠ ସଂସ୍କୃତ ଭଣ୍ଡାର ଯେ ॥
ଭଟ୍ଟି ସଂସ୍କୃତ କବି ଭଟ୍ଟିକାବ୍ୟ
ଭର୍ତ୍ତୃହରି ସଂସ୍କୃତ କବି କାବ୍ୟ
ନୀତି ଶତକ ଶୃଙ୍ଗାର ଶତକ
ଭବଭୂତି ଯେ ନାଟକ ଲେଖକ
ରାମ ଚରିତକୁ ଲେଖି ଯେ
ମାଳତୀମାଧବ ଉତ୍ତର କଳ୍ପନା
ଲେଖିକରି ଦେଶ ସୁଖୀ ଯେ ॥
କବି କୌଟିଲ୍ୟ ଶ୍ଲୋକରେ ବଶିଷ୍ଠ
ରାଜନୀତି ଅର୍ଥଶାସ୍ତ୍ରରେ ଶ୍ରେଷ୍ଠ
ମାଘ ସଂସ୍କୃତ ଶିଶୁପାଳ ବଧ
ଅଷ୍ଟାଧ୍ୟାୟୀ ବ୍ୟାକରଣ ସଂସ୍କୃତ
ପାଣିନି ବୈୟାକରଣିକ ଯେ
ପାତଞ୍ଜଳ ଯୋଗଶାସ୍ତ୍ରରେ ପଣ୍ଡିତ
ମହାଭାଷ୍ୟମ୍ ଲେଖକ ଯେ ॥

ବାଲ୍ମୀକଙ୍କ ସଂସ୍କୃତ ରାମାୟଣ
ମହାଭାରତ ବେଦବ୍ୟାସ ଯାଣ
ରଚିଣ ସଂସ୍କୃତେ ହେଲେ ଅମର
ଶ୍ରୀ ବାତ୍ସାୟନ କାମସୂତ୍ରେ ସାର
ସିଦ୍ଧାନ୍ତ ଦର୍ପଣ ଲେଖି ସେ
ଜ୍ୟୋତଷେ ବିଖ୍ୟାତ ପଠାଣି ସାମନ୍ତ
ଫିଟାଇ ଯାଇଛୁ ଆଖି ସେ ॥



## ଭାରତର ପ୍ରସିଦ୍ଧ ନେତା

ରାଗ-ରସକୁଲ୍ୟା

ଶାନ୍ତ କପୋତ ଜବାହର ଲାଲ
ଶ୍ରୀ ଚକ୍ରବର୍ତ୍ତୀ ଯେ ରାଜଗୋପାଳ
ରଣଜିତ୍ ସିଂହ ପଞ୍ଜାବ କେଶରୀ
ଗୋପବନ୍ଧୁ ଦେଶର ସେବାକାରୀ ସେ
ଜାତିର ଜନକ ଗାନ୍ଧୀ ଯେ
ଦେଶ ସ୍ୱାଧୀନତା ଯଜ୍ଞେ ଶ୍ୱାସ ଦେଇ
ହୋଇଲେ ଗୋରା ବିରୋଧୀ ଯେ ॥

ପଣ୍ଡିତ ଶାସ୍ତ୍ରୀ ଲାଲ ବାହାଦୂର
ଲୌହମାନବ ସର୍ଦ୍ଦାର ପଟେଲ
ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ
ଦେଶ ପ୍ରେମ ଥିଲେ ସୁଭାଷ ବୋଷ ସେ
ଭାରତର ନେତୃବର୍ଗ ଯେ
ଜନନାୟକ ପ୍ରକାଶ ନାରାୟଣ
ଧରିଥିଲେ ଶାନ୍ତ ମାର୍ଗ ଯେ ॥
ଲାଲ, ବାଲ୍, ପାଲ ଭାରତ ମଣି
ସ୍ୱାଧୀନ ସଂଗ୍ରାମେ ଥିଲେ ଅଗ୍ରଣୀ
ହିମାଳୟ ଠାରୁ କୁମାରିକାକୁ
ଡାକଲେ ବାପୁଜୀ ଜନଗଣଙ୍କୁ
ଆଗେଇଲା ଜନ ସ୍ରୋତ ସେ
ମଦନ ମୋହନ ଜଗତ ଜୀବନ
କଲେ ସଂଗ୍ରାମ ଜୀବନ୍ତ ଯେ ॥



# ଭାରତର ଶ୍ରେଷ୍ଠ କିଏ

ରାଗ-ରାମକେରୀ

ଅହିଂସା ପଣରେ ବାପୁଜୀ ଶାନ୍ତିରେ ଜବାହର
ଧର୍ଯ୍ୟ ବଳ ପଣେ ବଲ୍ଲଭ ଚିତ୍ତରଞ୍ଜନ ବୀର ।

ତ୍ୟାଗ ପଣେ ରାଜେନ୍ଦ୍ର ସମ ବିଦ୍ୟାପଣେ ଆଜାଦ
ଶାସ୍ତ୍ରପଣେ ଶାସ୍ତ୍ରୀ ଅଟନ୍ତି କହନ୍ତି ଭାରତେ ବୃନ୍ଦ ।

ବ୍ରହ୍ମଚର୍ଯ୍ୟ ପଣେ ବିନୋବା କୌଶଳେ ଇନ୍ଦିରା
ମାତାଙ୍କର ଅନ୍ତେ ଗଣିବ ପାଳ ଭାରତ ସାରା ।

ଲାଲ ବାଲ ପାଲ ପ୍ରବୀଣ ଉଚ୍ଚ ରାଜନୀତିରେ
କଲେ ଆନ୍ଦୋଳନ ଦେଶରେ ସ୍ୱାଧୀନତା ଆଶାରେ ।

ଜ୍ୟୋତି ବିଶାରଦ ମଣାଣି ସ୍ୱାମୀ ବିବେକାନନ୍ଦ
ବ୍ରହ୍ମଚର୍ଯ୍ୟ ରୂପେ ବିଖ୍ୟାତ ଗୁଣୀ ନିଗମାନନ୍ଦ

କୁବେର ପଣରେ ବିରଳା ସର୍ବ ସମ୍ପଦ ଖଣି
ସୁନ୍ଦର ବିଶାଳ ଭାରତ ହସି ଉଠେ ଧରଣୀ ।

ବେକାର ସମସ୍ୟା ସାଧନେ ଚିନ୍ତି ଥିଲେ ଗୋଖେଲ
ସ୍ୱାଧୀନତା କାମୀ ଦେଶରେ ତିଲକ ଗଙ୍ଗାଧର ।

ବ୍ରିଟିଶ ଶାସନ ବିରୋଧି ସେ ଲାଲ ଲାଜପତ
ମଦନମୋହନ ବୈଦିକ ବିଦ୍ୟାକଲେ ଉନ୍ନତ ।

ସର୍ବପଲ ରାଧାକୃଷ୍ଣନ୍ ଦର୍ଶନ ଶାସ୍ତ୍ରେ ସିଦ୍ଧ
ଚକ୍ରବର୍ତ୍ତୀ ରାଜଗୋପାଳ ରାଜନୀତି ପ୍ରସିଦ୍ଧ ।

ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ସାରା ସଂସାରେ ଖ୍ୟାତ
ଭାରତେ ସରୋଜନ୍ ନାଇଡୁଙ୍କର ରାଜେ କୀରତ ।

ଜୟପ୍ରକାଶ ନାରାୟଣ ସମାନ ଥିଲେ ଗାନ୍ଧୀ
ଭାରତ ରତ୍ନ ଖାଁ ଗଫୁର ଥିଲେ ସୀମାନ୍ତ ଗାନ୍ଧୀ ।
ସମ୍ବିଧାନର ଜନ୍ମଦାତା ପ୍ରିୟ ଆମ୍ବେଦକର
ମହା ମହାରଥି ଏମାନେ ଭାରତେ ଯୋଦ୍ଧାବୀର ।

●

## ପାଞ୍ଚବୀର

ଯେ କାଳେ ମା ଆଲୋ ଗୋରା ସରକାର
ଆସିଲା ଲଢ଼ିବା ପାଇଁ
ମହା ମହାବୀର ପୁଅମାନେ ତୋର
ହୁଙ୍କାର ଉଠିଲେ ଧାଇଁ ।୦।
ବଡ଼ ବଡ଼ କ୍ଷତ୍ରୀ ଯୋଦ୍ଧା ମହାରଥୀ
ବୀର ମୋ ଓଡ଼ିଆ ଭାଇ
ଜାନ୍ ଯାଉପଛେ ମାନ୍ ଥାଉ ଦେଶେ
ମଥାକୁ ନୁଆଁଇ ନାହିଁ ।୧।
ତୋ ଗରଭୁ ଯାତ କେତେ ସୁତାସୁତ
ଥିଲେ ତୋର ଗୁଣବାନ
ସମ୍ପଦ ବିଭବ ରଖିଲେ ଗରବ
ଦେଶ ଜାତି ସନମାନ ।୨।

ଭାରତ ଦେଶର          ବିପଦ ବେଳରେ
ପାଞ୍ଚଥର ଟ୍ମେଲହେଲେ
ଗାନ୍ଧୀ ଜବାହାର          ସୁଭାଷ ପଟେଲ
ଗଙ୍ଗାଧର ଯେ ଯୁଝିଲେ ।୩।
ଜନ୍ମଭୂମି ସମ          କେ ହେବ ସମାନ
ଯାହାର ହବାର ହେଉ
ଜନମ ଭୂମିର          ସ୍ୱାଧୀନତା ଲାଗି
ଏ ଜୀବନ ପଛେ ଯାଉ ।୪।
ଲଢ଼ି ଲଢ଼ି ଶେଷେ          ଦେଶରୁ ତଡ଼ିଲେ
ଗୋରଙ୍କୁ ଯୁଦ୍ଧେ ହଟାଇ
ତାଙ୍କପରି ଆମେ          ମଣିଷ ହୋଇବା
ତାଙ୍କ ଆଦରଶ ନେଇ ।୫।



## ପଠାଣି ସାମନ୍ତ

ଭାରତ ଭୂଇଁର          ଗଉରବ ଶିଖା
ସାମନ୍ତ ଚନ୍ଦ୍ର ଶେଖର
ବାଉଁଶ କାଠିରେ          ମାପିଲା ଆକାଶ
ଧନ୍ୟ ପ୍ରତିଭା ତାହାର ।୧।

ତାସ ଗ୍ରହ ଗଣି ଜୀବନ କାଟିଲ
ସବ ଉଜାଗର ହୋଇ
ତାହାପର ପୁଅ ଭାରତ ଭୂଇଁରେ
ଆଉତ ଜନମି ନାହିଁ ।୧।
ଗୋଟି ବୈଜ୍ଞାନିକ କରିଲେ ପ୍ରମାଣ
ତପନ ସର୍ବଦା ସ୍ଥିର
ସାମନ୍ତ ଗଣନା ହୋଇଲା ପ୍ରମାଣ
ପୃଥିବୀ ଅଟଇ ସ୍ଥିର ।୨।
ଅଟଳ ପ୍ରଜ୍ଞାରେ କାଠି ସାହାଯ୍ୟରେ
ଆକାଶକୁ ଲକ୍ଷ୍ୟକରି
ଗ୍ରହ ନକ୍ଷତ୍ରଙ୍କ ଗତି ବିଧି ଦେଖି
ମାପିଲା ସେ କରଧରି ।୩।
ସଠିକ ପ୍ରମାଣ ଦେଖାଇ ଦେଲା ସେ
କେବେ ନକରି ଖାତିରି
ତଥ୍ୟ ପଡ଼ିଗଲା ଗୋରା ସରକାର
ଭଯ୍ଯେ ପଳାଇଲା ଡରି ।୪।
ସର୍ବଗୁଣେ ଭର- ଷଣେ ପରିପୂର୍ଣ୍ଣେ
ସୁଲକ୍ଷଣ ଥିଲା ପୁଣି
ଆଜିକାଲେ ଭାରତ ଜନନୀ ତାହାକୁ
ଖୋଜୁଅଛୁ ଝୁରି ଝୁରି ।୫।
ସାରା ପୃଥିବୀରେ ବଢ଼ାଇ ଦେଇଛୁ
ଭାରତର ଗଉରବ
ଭାରତ ମାତାର ଯୋଗ୍ୟତମ ସୁତ
ଥିଲା ସେ ମହାମାନବ ।୬।

ସୌର ଜଗତକୁ କର ନିରୂପଣ
ରଚି ସିଦ୍ଧାନ୍ତ ଦର୍ପଣ
କାଳ କାଳ ପାଇଁ ରଖି ଗଲ ଯଶ
ଧନ୍ୟ ଉତ୍କଳ ନନ୍ଦନ ।୨।
ବିଜ୍ଞାନର ବଳେ ଧନ୍ୟ ହେଲ ଦେଶ
ଜୟ ଯଶ କୀର୍ତ୍ତି ଗାଥା
ଜ୍ଞାନର ପ୍ରଭାବେ ଆଦର୍ଶ ସ୍ୱଭାବେ
ପଣ୍ଡିତ ନୁହେଁ ତା ମଥା ।୮।
ସାମନ୍ତ ପଞ୍ଜିକା ଭବିଷ୍ୟତ ଶଙ୍କା
ଦୂରକରେ ସର୍ବଜନେ
ସିଦ୍ଧାନ୍ତ ଦର୍ପଣ କରେ ନିରୂପଣ
ସାମନ୍ତଙ୍କୁ ସ୍ମରମନେ ।୯।



## ମହାତ୍ମା ଗାନ୍ଧି

ଗାନ୍ଧିବୁଢ଼ା ଯାହା କଲରେ
ଲଢ଼ି ଲଢ଼ି ସେତ ବ୍ରିଟିଶ ସହିତ
ଦେଶକୁ ସ୍ୱାଧୀନ କଲରେ ।୦।
ଫୁଙ୍ଗୁଳା ଦେହରେ ଖଡ଼ମ ପାଦରେ
ନ ପିନ୍ଧି ଦାମିକା ବେଶରେ
ଆଣ୍ଠୁ ନ ଲୁଚବା ଖଦଡ଼କୁ ପିନ୍ଧି
କାନ୍ଧେ ପକାଏ ଚଦରରେ ।୧।

ସୃଷ୍ଟି ଖଣ୍ଡେ ଧରି ଘୂଚିଲେ ଛଳ ଢ଼ଳ
ଚଷମା ଲଗାଇ ଆଖିରେ
ଯାହାଲୋକେ ଗୀତା ସୂର୍ଯ୍ୟାଲୋକେ ସୂତା
ଚରଖା ଦରିଦ୍ର ସେବାରେ ।୨।

ଶାଶ୍ୱତ ଝରଣା ପ୍ରାଣେ କର୍ମରତ
ଦୁଃଖୀ ଦରିଦ୍ରଙ୍କ ପାଇଁରେ
ଦେଶର ଏକତା କରି ଅଖଣ୍ଡତା
ଯୋଜନା କଷ୍ଟଭି କଲରେ ।୩।

ବନ୍ଧୁକ ଗୁଳିରେ ପ୍ରାଣ ହରାଇଲ
ଜୀବନ ଉତ୍ସର୍ଗ କରିରେ
ଦୁଃଖେ ଉପବାସେ ବିନା ଅସ୍ତ୍ର ଶସ୍ତ୍ରେ
କଷ୍ଟ ସହି ଲଗେ ସେବାରେ ।୪।

ଶାନ୍ତି ମୈତ୍ରୀ ଭାବ ଜାଗ୍ରତ କାରଣେ
ଖୋଜେ ଝୁଣ୍ଟି ଝୁଣ୍ଟି ଦେଶରେ
ପୃଥିବୀର ଇତି- ହାସରେ ଏପରି
ମାନବକେ ନାହିଁ ଦେଖାରେ ।୫।

ସରଳ ଆଦର୍ଶେ ଜଗତ ମଧ୍ୟରେ
କିଏ ହେବ ସମତୁଲରେ
କାରାଦଣ୍ଡ ଭୋଗି ଅହିଂସାକୁ ସେବି
ସତ୍ୟର ପୂଜାରୀ ସେହିରେ ।୬।

ଭଗିରଥୀ ସମ ସ୍ୱାଧୀନତା ଗଙ୍ଗା
ଦେଶେ କଲ ଆନୟନରେ
କାରଷ୍ଟଳ ପଡ଼ି କାରଷ୍ଟର ହୋଇ
ଦାସ ପ୍ରଥା ଉଠାଇଲରେ ।୭।

ତ୍ରିକାଳଦର୍ଶୀ ସେ ହିମାଳୟ ଗିରି
ଭାରତର ମେରୁଦଣ୍ଡରେ
ତ୍ରିରଙ୍ଗ ପତାକା ଦେଶେ ଉଡ଼ାଇଲ
ଭାରତକୁ ଜଗାଇଲ ରେ ।୮।

●

# ଜବାହର ଲାଲ ନେହେରୁ

ଆହେ ଜବାହର ଭାରତ ମାତାର
ଥିଲ ସୁଯୋଗ୍ୟ ସନ୍ତାନ
ତୁମ ଯୋଗୁଁ ପିନା କଷ୍ଟେ ଭାରତକୁ
ବଞ୍ଚାଇ କରିଲ ପୂର୍ଣ୍ଣ ।୧।

ଗାନ୍ଧୀ ସଙ୍ଗେ ମେଳ ହୋଇ କଲ ଗୋଳ
ହେଲା ଭାରତ ସ୍ୱାଧୀନ
ସେଥିପାଇଁ ପିନା ଭାରତ ଜନନୀ
ଖୋଜୁଅଛୁ ଚିରନ୍ତନ ।୨।

ବ୍ରିଟିଶ୍ ଶାସନ ବନ୍ଧୁକରେ ତୁମେ
କଲ ଜୀବନ ସଂଗ୍ରାମ
ଗୋରା ସରକାର ପଳାଇଲ ଛାଡ଼ି
ପବିତ୍ର ଭାରତ ଧାମ ।୩।

ସତ୍ୟ ଶାନ୍ତି ପ୍ରେମ    ମୈତ୍ରୀ ପ୍ରୀତିରେ
ମୋହିନେଲ ଜନ ମନ
ହେଲା ଆନ୍ଦୋଳନ    ଅହିଂସା ଅସ୍ତ୍ରରେ
ଶେଷ ବ୍ରିଟିଶ୍ ଶାସନ ।୪।
ଗାନ୍ଧୀ ସଙ୍ଗେ ମିଶି    ବିଜୟ ତ୍ରିରଙ୍ଗୀ
ଦେଶରେ ଉଡ଼ାଇଥିଲ
ଜନ ଅନୁରୋଧେ    ସ୍ୱାଧୀନ ଭାରତେ
ପ୍ରଧାନ ମନ୍ତ୍ରୀ ହୋଇଲ ।୫।
ହେଲା ଅବସାନ    ଫିରିଙ୍ଗି ଶାସନ
ଦୁର୍ନୀତି ମୂଳୋତ୍ପାଟନ
ନ୍ୟାୟ ଧର୍ମ ଶାନ୍ତି    ସୁବିସ୍ତର ଲଭି
ଉଲ୍ଲାସ ଭାରତ ଜନ ।୬।
ତୁମ ସ୍ନେହ ପାଇ    ଭାରତର ଶିଶୁ
ଆନନ୍ଦେ ହେଲେ ନିମଗ୍ନ
ତୁମ ଜନ୍ମ ଦିନ    କରିଲେ ପାଳନ
'ଶିଶୁ ଦିବସ' ପ୍ରମାଣ ।୭।
ଭାରତ-ବାସୀଙ୍କୁ    ସୁଖଦେଇ ତୁମେ
ଅକାଳେ ପଡ଼ିଲ ଝଡ଼ି
ତୁମ ଯଶ ଗାନ    କୋଟି କୋଟି ଜନ
ନ ଯିବେ କେବେ ପାଶୋରି ।୮।
ଦେଶ ହିତେ ପ୍ରାଣ    କରିଣ ଉତ୍ସର୍ଗ
ଲଭିଲ ଭାରତ ରତ୍ନ
ଧନ୍ୟ ଜବାହର !    ତୁମେ କାଳଜୟୀ
ତୁମେ ହିଁ ଶର ଅମ୍ଳାନ ।୯।



# ବୀର ନେତାଜୀ

ନେତାଜୀ ଯାଇଛ ଦେଖାଇ ଆଦର୍ଶ
ଭାରତ ଜନତା ଯାଗରେ
ଦେଶ ସ୍ୱାଧୀନତା ପାଇଁ ଜୀବନଟା
ସୁଭାଷ କଲ ତ୍ୟାଗ ତ୍ୟାଗରେ ।୧।

ବାଲ୍ୟକାଳୁ ସେହି ରୋଗୀଙ୍କ ସେବାରେ
ଜୀବନ ଖଟାଇ ଥିଲରେ
ଅଜ୍ଞାତ ସମାଜେ କୁସଂସ୍କାର ଦୂର
କରିବାରେ ବ୍ରତୀ ହେଲରେ ।୨।

ଦେଖି ପରାଧୀନ ଦେଶର ଶାସନ
ହୃଦୟ ତା ହାଣି ହେଲରେ
ଗୋରା ସରକାର କରିବ ନିର୍ମୂଳ
ଜୀବନକୁ ପଣ କଲ ରେ ।୩।

ଇଂରେଜ ସର୍କାର ବିରୁଦ୍ଧରେ ସ୍ୱର
ଉତ୍ତୋଳନ ସେହି କଲରେ
ଗୁଳିର ଜବାବ ଗୁଳିରେ ଦେବାକୁ
ଧୃଷ୍ଟ ପ୍ରତିଜ୍ଞା ନେଲ ରେ ।୪।

ଏ ଦେଶର ନେତା ନହେବାରୁ ରାଜି
ଦେଶ ଛାଡ଼ି ସେହି ଗଲ ରେ
ଆଜାଦ୍ ହିନ୍ଦ୍ ଫୌଜ ଗଢ଼ିଣ
ଜନତା ଆହ୍ୱାନ ଦେଲ ରେ । ୫

ଦାଣ୍ଡୀ ଚଳେ ଦାଣ୍ଡୀ ଆହ୍ୱାନ ଦେଇଣ
ଜନ ଜାଗରଣ ଛଳରେ
ବିଦେଶୀ ଶାସକ ଷଡ଼ଯନ୍ତ୍ରରେ ସେଥି
ସ୍ୱଦେଶେ ମେଣ୍ଟ ବାନ୍ଧିଲେ ରେ ।୬।
ଗାନ୍ଧିଜୀ ସଂଗରେ ଲଢ଼ି ଲଢ଼ି କେତେ
ଜୀବନଟା ବଳି ଦେଲେ ରେ
ଇଂରେଜ ଶାସକ ଶୁଣିଲା ଧମକ
ଭୟେ ଥରି ଉଠି ଗଲେ ରେ ।୭।
ନବୀନ ଯୁଗର ଅରୁଣ ଆଲୋକେ
ଆଜାଦ ବାହିନୀ ଗଢ଼ିଲରେ
କଷ୍ଟ ଭୋଗର ଜଞ୍ଜିର ଛୁଟୁ
ମାତୃଭୂମି ଜୟ ଗାନରେ ।୮।
ସୁଭାଷଙ୍କ ବାଣୀ ଯୁବ ଜାଗରଣେ
ଯୋଗ ଦେଲ ସୁରଷାଇ ରେ
ସ୍ୱର୍ଗଠାରୁ ବଡ଼ ମୋ ଜନମ ଭୂଇଁ
ଜୟ ଲଭେ ଭାଳ କାଳ ରେ ।୯।
ସ୍ୱାମସେନ ସମ ମହାବୀର ଭାଇ
ଶୂନ ଗୋଳା ପାଇଁ ଗଲେରେ
ଖୋଜ ଖୋଜ ଅଙ୍କ ଝୁରୁଅଛି ଦେଶ
ନେତାଜୀ କୁଆଡ଼େ ଗଲେରେ ।୧୦।



# ଇନ୍ଦିରା ଗାନ୍ଧୀ

ଭାରତରେ ଇନ୍ଦିରା ଦେଖାଇ ଆଦର୍ଶ
ଯାଇଛନ୍ତି ପଥ ଦେଖାଇ
ଝୁରି ଝୁରି କାନ୍ଦି ଖୋଜେ ଆଜି ଦେଶ
ଇନ୍ଦିରା ମା ଗଲେ କାହିଁ ॥
ଫଳନ୍ତ ଏମାନ୍ତି ସୁବର୍ଣ୍ଣ ସମ୍ପତ୍ତି
ଧନବଳ ଜନବଳ
ଏ ଭାରତ ସଙ୍ଗେ ଅନ୍ୟଦେଶ କାହିଁ
ହୋଇବକ ସମତୁଲ ॥
କୋଟି ଜନରବେ ଡାକନ୍ତି ସରବେ
ଗଭୀରବେ ଜୟଗାନ
କୋଟିଏ ସନ୍ତାନ କରନ୍ତି ଆହ୍ୱାନ
ଭକ୍ଷିଗଲା ଦେଶ ମାନ ॥
ମହାରାଣୀ ଭିକ୍ଟୋରିଆଙ୍କ ପରି ସେ
ଗାରିମା ମହିମାମୟୀ
ବାକ୍ ସୁପ୍ରବୀଣା ସୁଦୃଢ଼ ଶାସିକା
ତାହାପରି କେହି ନାହିଁ ॥
ତାଙ୍କଗି ଭାରତ ହୋଇଛି ଆଦର୍ଶ
ଜଗତରେ ଶ୍ରେଷ୍ଠ ଦେଶ
ସକଳ ପ୍ରକାର ଉନ୍ନତିରେ ଦେଶ
ବାସୀ କଷ୍ଟହନ୍ତି ବାସ ॥
କେତେ ଯେ ଯୋଜନା କଳ କାରଖାନା
ଯୋଗାଇ ଦେଇଛି ଦେଶେ
ଅନ୍ନ ଫ୍ରେଶା କେମା ବାଣିଜ୍ୟ ଭଡାରୁ
ଲଭି ସୁଖେ ଦେଶ ବସେ ॥

ଚେତନ୍ତି ମହାନାଙ୍କ ଅଟେ ସେ ଇଙ୍ଗିତ
ତାର ଉଲ୍ଲଙ୍ଘନ ଫଳେ
ଏଥର ଉତ୍କଳରେ ଏ ଦେଶର ଟେକ
ରଖୁଅଛି କାଳେ କାଳେ ॥



## ସମାଜସେବୀ ଅରକ୍ଷିତ

ଆପେ ଅରକ୍ଷିତ ସମାଜେ ବିଖ୍ୟାତ
ଯଶ ରଖିଛି ଭୂମ୍ବର
ପର ଦୁଃଖ ଲାଗି ନିଜ ସ୍ୱାର୍ଥ ତ୍ୟାଗୀ
କଲ ଦେଶ ଉପକାର ।୧।
ବିଲାତରେ ପାଠ ପଢା ଶେଷକରି
ଭାରତ ଭୂମେ ଫେରିଲ
ଆଇନ ପଣରେ ବିଧି ବିଶାରଦ
ଉପାଧି ପ୍ରାପତ ହେଲ ।୨।
ଆଇନ୍ କଲେଜ ଶ୍ରୀ ଅଧ୍ୟକ୍ଷ ରୂପେ
କର୍ତ୍ତବ୍ୟରେ ଯୋଗଦେଲ
ଭାରତ ସର୍କାର ପ୍ରତିନିଧି ରୂପେ
ପୃଥିବୀ ଭ୍ରମଣ କଲ ।୩।

ଅଭିଜନ ଭଳି      ବହୁ ଅଭିଜ୍ଞତା
ଦେଶ ବିଦେଶରେ ବୁଲି
ଜଣା ନିବାରଣ      ସମ୍ବନ୍ଧରେ ବହୁ
ଜ୍ଞାନ ଆଲୋଚନା କରି ।୩।

ଭାରତର ସର-      କାରଙ୍କୁ ଏ ବିଷୟ
ଦଗ୍ ଦରଶନ ଦେଲେ
ଧର୍ମ ହେଉ କମ୍ବା      ଗହ୍ବର ହେଉ ସେ
ସମସ୍ତଙ୍କ ସେବାକଲ ।୪।

ଅସହାୟ ଲୋକ      ମହିଳା ମାନଙ୍କୁ
ସାହାଯ୍ୟ ଅଦାଲତରେ
ଅର୍ଥ ଲୋଭ ଛାଡ଼ି      ସୁବିଚାର କରି
ପ୍ରତିଷ୍ଠା ଏ ସମାଜରେ ।୫।

ସବୁ ଜଞ୍ଜାଳକୁ      ଜଳାଞ୍ଜଳି ଦେଇ
ସେବାରେ ହେଲା ନଭର
ଘରଦ୍ୱାର ସବୁ      ତ୍ୟାଗ କରିଦେଇ
ହେଲି ଦେଶ ଉପକାରୀ ।୬।

ବେକାର ମାନଙ୍କୁ      ଶିଳ୍ପକର୍ମ ଯୋଗାଇ
ସମସ୍ୟା କରିଲ ଦୂର
ଆଜ ତୁମପାଇଁ      ଦସିଜଟେ ଦେଶ
କରି ଜନ ଉପକାର ।୭।

ଧର୍ମ ପରାୟଣ      ଦେବ ଗୁରୁଜନ
ଦେଖିଲ ଅଟାଳ ଗତି
ଅଭ୍ୟାଗତ ମାନ      ଖୋଜି ଦେଇଅଛୁ
ସକଳ ସୁବିଧା କରି ।୮।

ଚତ୍ରୁଦୂଃକଷ୍ଟ ଦୁଖୀ      ହୃଦୟ ଦଗ୍ଧାଛନ୍ତି
ସ୍ୱପ୍ନ ଯେ କଲ ସାକାର
ମନପ୍ରେ କଳ୍ପନା      କର ବିବେଚନା
ଯୋଜନା ନାନା ପ୍ରକାର ।୯।
ଅମର ମଧ୍ୟରୁ      ତୁମପର କାର୍ଯ୍ୟ
କିଏ ଅଛୁ ଉତ୍କୋଷ
ବୁଝାଇବା ପାଇଁ      ଦରିଦ୍ର ବେଦନା
କିଏ ହେବ ତୁମ ପରି ।୧୦।
ବୃଦ୍ଧ ବୟସରେ      ହୋଇ ଉପନୀତ
କର୍ମଠ ହେ ମହାମାନ୍ୟ
ପ୍ରଶାନ୍ତ ଉଦାର      ତୁମେ କର୍ମବୀର
ସମାଜରେ ଅଗ୍ରଗଣ୍ୟ ।୧୧।
ତୁମର ସୁନାମ      ସାରା ଓଡ଼ିଶାରେ
ଜନମୁଖେ ଶୋଭାପାଏ
ଅମ୍ଳାନ ରହିବ      ଅକ୍ଷୟ କରି
ସୂର୍ଯ୍ୟ ଚନ୍ଦ୍ର ଥିବାଯାଏ ।୧୨।



## ଜାତୀୟ ସଙ୍କେତ

ଋତ-ଉସ୍କୁଣ୍ଡା

ଭାରତ ଦେଶର ଗାନ୍ଧିଜୀ ପିତା
ଦେଶ ମହାତ୍ମାର ସୁଶ୍ରେଷ୍ଠ ନେତା
ଅଶୋକ ସ୍ତମ୍ଭ ଜାତୀୟ ସଙ୍କେତ
ଜନଗଣ ମନ ଜାତୀୟ ଗୀତ ସେ
ଜୟ ତ୍ରିରଙ୍ଗା ପତାକା ଯେ
ରକ୍ଷି ଦେଶ ହେଲେ ଦେଶ ଯୋଦ୍ଧା
ପ୍ରଧାନ ବୃତ୍ତି ଚାଷକା ଯେ ।୧।
ଜାତୀୟ ପୁଷ୍ପ କମଳ ସୁନ୍ଦର
ପଶୁ ସିଂହ ଜାତୀୟ ପକ୍ଷୀ ମୟୂର
ଭାରତ ସମ୍ବିଧାନକୁ ମାନିବା
ଗରବରେ ପତାକା ଉଡ଼ାଇବା ସେ
ସର୍ବେ ଭାଇ ଭାଇ ମିଶି ଯେ
ଦେଶ ସଂସ୍କୃତିକୁ ଉଦ୍ଧାର କରିବା
ବସି ଉଠ ଦେଶବାସୀ ଯେ ।୨।
ଜାତୀୟ ପତାକା ହେଉ ରକ୍ଷିବା
ଭାରତ ଗୌରବ ଗୀତ ଗାଇବା
ସର୍ବେ ଏ ଦେଶର ଏକତା ହୋଇ
ଜାତୀୟ ସମ୍ମାନ ସଙ୍ଗୀତ ଗାଇ ସେ
ଦେଶ ସୁରକ୍ଷା କରିବା ଯେ
ସାରା ଦୁନିଆରେ ଭାରତ ଗୌରବ
ମିଳମିଶି ଦେଖାଇବା ଯେ ।୩।



## ବ୍ରିଟିଶ ରାଜତ୍ୱ

ଯାହାକଲ ବ୍ରିଟିଶ ଆସି ଭାରତ ଦେଶରେ
ଦଖଲ କରିଲ — ଆସି ଗୋରା ପିଲ
ଶୋଷିଲ ଏଦେଶ ରକତ ମାଂସ କେ (ଘୋଷା)
କ ବର୍ଣ୍ଣିବ ତାର — ରୂପ ଗୁଣ ମାନ
ଦେଖି ଚମତ୍କାର ପୋଷାକ ବେଶ
ଡରଇ ଥରଇ — ଆଇନ ଚଳାଇ
ହୁକୁମ ଜାରିକଲ ସର୍ବ ନାଶ କେ ।୧।
ଧମକ ଚମକ — ଦେଖାଇ ବନ୍ଧୁକ
ଦୋଷ ନଥାଇ ଘେର କାରବାସ
ଧନ ରତ୍ନ ସବୁ — ନେଲଟା ଦେଶକୁ
ମହା ଉଲ୍ଲାସରେ କଲ ଯା ଆସରେ ।୨।
ପରଜାଙ୍କ ପାଇଁ — ଟିକେ ଦୟା ନାହିଁ
ଖଟାଇ ରଖିଲ ଲୋକେ ଉପାସ
ଲୋକ ଯୋଗ ତାର — ଡନ୍‌ଲପ୍ ଗଡ଼
ମହା ମଉଜରେ କଲ ବିଳାସ କେ ।୩।
ଏ ଭାରତ ଦେଶୁ — ସବୁ କରି ଗ୍ରାସ
ଭୟରେ ଆଜକେ ନଧରେ ଦୋଷ
ଯେତେ ଲୁଟି ଘାଟ — ଅନ୍ୟାୟ କରିଲେ
ଆଇନ ଦେଖାଇ ହେଲ ନିର୍ଦ୍ଦୋଷ ରେ ।୪।
ସତାଇ ସଡ଼ାଇ — ଗଡ଼ାଇ ମାରିଲ
ନାରଖାର କଲ ଭାରତ ଦେଶ
କଡ଼ା ଶାସନରେ — ଖାଲସ୍ କରଇ
ଭାରତକୁ କଲ ହା ହତାଶ ହେ ।୫।

ବିଶାଳ ଭାରତ ମହିମା ଗାଉନ୍ତ
କଳା ଯନ୍ତ୍ରକୁ କଲ ବିନାଶ
ଜାତି ପ୍ରେମ ବହ୍ନି ଉଜାଗର କଲା
ସ୍ୱାର୍ଥ ଅନ୍ଧତନ୍ତ୍ର ବ୍ରିଟିଶ ନାଶ ରେ ।୫।
ଏ ଭାରତ ବୀର ହାତସି ଚକ୍ରକୁ
ମହାବଳ ସିଂହ ଛୁଆର ବେଶ
ଦେଖି ଗୋରା ସର- କାର ହଟିଗଲା
ଛାଡ଼ ପଳାଇଲା ଫେରଙ୍ଗୀ ଦେଶ ରେ ।୬।



## ସ୍ୱାଧୀନ ଦେଶର ସନ୍ତାନ

ଜନମ ଭୂମି ମୋ ସୁନାର ଭାରତ
ଲଭି ଯା କୋଳେ ଜନମ
ପୃଥିବୀ ପ୍ରସିଦ୍ଧ ଜଗତର ନାଥ
ଯହିଁ ନୀଳାଚଳ ଧାମ ।୧।
ଉତ୍ତରେ ଯାହାର ହିମାଳୟ ଗିରି
ମଧ୍ୟେ ବିନ୍ଧ୍ୟ ପରବତ
ଗଙ୍ଗା ଯମୁନା କା- ବେରୀ ପୁଣ୍ୟତୋୟା
ଜଗତ ଯାକ ବିଦିତ ।୨।

ତାଜ ମହଲର ଅପୂର୍ବ ସୌନ୍ଦର୍ଯ୍ୟ
ପୃଥିବୀରେ ପଡ଼େ ଦୃଷ୍ଟି
କୋଣାର୍କ ଶୋଭା ଚିର ମନଲୋଭା
ଦର୍ଶକେ ହୁଅନ୍ତି ବାଇ ।୩।
ଏ ଦେଶେ ଜନମି କବି କାଳିଦାସ
ଚନ୍ଦ୍ରଶେଖର ସାମନ୍ତ
ରବୀନ୍ଦ୍ର ଠାକୁର ନୋବେଲ ପ୍ରାଇଜ
ପାଇ ପୃଥିବୀ ବିଖ୍ୟାତ ।୪।
ମହା ମହା ବୀରେ ଜନମି ଯା କୋଳେ
ନ ହୋଇଣ ଭୟଭୀତ
ବିନା ଅସ୍ତ୍ର ଯୁଦ୍ଧେ ଜିଣିଲେ ବ୍ରିଟିଶେ
ହଡ଼ାଇଲେ ଦେଶେ ନେତ ।୫।
ଗଢ଼ିଲେ ଆଇନ ଚଳିଲେ ଶାସନ
ଆନନ୍ଦ ଉଲ୍ଲାସ ଭରେ
ହସିଉଠେ ଆମ ସୁନାର ଭାରତ
ଆଜ ସାରା ଦୁନିଆରେ ।୬।
ସେହି ଦେଶେ ଆମେ ଲଭିଛୁ ଜନମ
ରଖିବୁ ତାହାର ଟେକ
ମିଳିମିଶି ଆମ୍ଭେ ରଚିବୁ ଜାତି
ଦେଇ ନୂତନ ଆଲୋକ ।୭।
ଜୟ ମା ଭାରତ ଲଭ ଶୁଭାଶିଷ
ବୀର ପ୍ରସବିନୀ ମାତ
ସତ୍ୟ ପୂଜାରିଣୀ ଧର୍ମ ପ୍ରଚାରିଣୀ
ବରଦାୟିନୀ ସର୍ବଦା ।୮। ●

# କୃଷକ ବନ୍ଧୁ

ଏ ଦେଶ ଜନମ ମାଟିରେ ମୋର ଏ ଦେଶ ଜନମ ମାଟି
ତୋହଲାଗି ଚଷା ଦୁନିଆଁଟି ପୋଷା
ତୋ ସମ କେହ୍ବ ନାହିଁଟିରେ ।୧।

ଦେଶ ସେବା ପାଇଁ ଲଭିଛୁ ଜନମ
ସାଫଲ୍ୟ କରିଛୁ ଜୀବନ ଧରମ
ରକ୍ତ ଜଳ ଖଟି ଖଟିରେ ।୨।

ବାଧେ ନାହିଁ ଖର ବରଷା ଶୀତର
ଖାଇବା ପିନ୍ଧିବା ସୁଖ ନାହିଁ ତୋର
ଦୁଃଖେ ଦିନ ଯାଏ କଟିରେ ।୩।

ଲୋକଙ୍କୁ ଯୋଗାଉ ଭୂଷ୍ଟ ଦାନା କନା
ସଭିଏଁ ସମାନ ତୋ ଆଖିରେ ସିନା
ସୁଖରେ ଚଳେ ଦୁନିଆରେ ।୪।

ଆନନ୍ଦ ଗରବେ ମଙ୍ଗଳେ ବୁଲନ୍ତି
ତୋ ଦରବ ଖାଇ ଲଭି ସୁଖ ଶାନ୍ତି
ଜୀବଜନ୍ତୁ କୋଟି କୋଟିରେ ।୫।

କେତେ ବଡ଼ ଲୋକ ଜନମି ଅଛନ୍ତି
ତୋ ସଙ୍ଗେ ସମାନ ଜଣେ କେ ହୁଅଁନ୍ତି
ତୋହଲାଗି ସୁନା ଦେଶପେ ।୬।

ତୋହ ଲାଗି ଗ୍ରାମ ଫୁଲ୍ଲିଳ ଚଳନ୍ତି
ତୋ ଶ୍ରମର ବଳେ ଦୁନିଆ ବଞ୍ଚିଛି
ତୋହଲାଗି ପେଟ ପୋଷାରେ ।୭।

ପିଣ୍ଡ ଖଣ୍ଡ ଖଣ୍ଡେ ମୁଣ୍ଡ ଝାଳ ଭୁଣ୍ଡେ
ଭୋକ ଉପାସରେ ନଖାଇଲୁ ଦଣ୍ଡେ
ଦୁଃଖେ କଟାଇଲୁ ଜନରେ ।୮।

ଢଳ ଢଳ ତୋର ଜଗତରେ ସାଭ
ଭୁ ଅଟ୍ ସଭଙ୍କ ଅଭ ଆଶୋର
ରଖିଲୁ ଜଗତ ମାନରେ ।୯।

ତୋ ଲାଗି ସକଳ ସମ୍ପଦ ବିଭବ
ମାନବ ସମାଜେ ଜୟ ଜୟ ଶବ୍ଦ
ତୋର ପଣ ଦେଶ ନାଏରେ ।୧୦।

ଜୟ ହେ ଜବାନ   ଜୟ ହେ କିଶାନ
ଲାଲବାହାଦୁର  ସୁଯୋଗ୍ୟ ସନ୍ତାନ
ଗାନ୍ଧୀମନ୍ତ୍ର  ଭୋଟ ଗାଇଁରେ ।୧୧।

ତୋର ନାମ ଲେଖା ଏଦେଶ ମାଟିରେ
ରହିଥିବ ଏହା ଯୁଗ ଯୁଗାନ୍ତରେ
ଅକ୍ଷୟ ଭାରତ ଦେଶରେ ।୧୧।



## କବି ପ୍ରତିଭା

ନୟାଗଡ଼ ରାଜା କୃଷ୍ଣଚନ୍ଦ୍ର ସିଂହ
ରାଜଭବନକୁ ଯାଇ
ମୋ କାବ୍ୟ କବିତା ପାଣ୍ଡୁଲିପିମାନ
କେତେ ଖଣ୍ଡ ଥିଲି ଦେଇ ।୦।

ମୋର କାବ୍ୟକୁଞ୍ଜ ପ୍ରତି ଶୁଭ ଦୃଷ୍ଟି
ରାଜାଙ୍କୁ ମୁଁ ଭେଟି ଦେଲି
ଗୋଟି ଗୋଟି କରି ହରଷ ଚିତ୍ତରେ
ପଢ଼ିଲେ ଆଗ୍ରହଭରେ ।୧।

ତାଙ୍କ ସହ ଥିଲେ ଖଣ୍ଡପଡ଼ା ରାଜା
ହରିହର ମର୍ଦ୍ଦରାଜ
ଉଭୟେ ଏକତ୍ର ବହୁ ଚିନ୍ତା କରି
ଦେଲେ ଆଶୁକବି ପଦ ।୨।

ପୂର୍ବର ଗୌରବ ମହିମା ବିଭବ
ଦେଶ, ଯଶ, କୀର୍ତ୍ତିମାନ
ପ୍ରବନ୍ଧ ରଚନା କବି ଆଲୋଚନା
ଦେଲେ ବହୁ ସନମାନ ।୩।

ଧରଣୀ ରାଣୀର ଗୌରବ ଗୀତିକା
ପଦ୍ୟାବଳୀ ଦେଖି ଦେଖି
ଶିକ୍ଷାର ଉନ୍ନତି ସାହିତ୍ୟ ସଂସ୍କୃତି
ଫିଟାଇଛୁ କବି ଆଖି ।୪।

"ମା ଦକ୍ଷିଣକାଳୀ" "ଜମା ପରଶେସ୍ୱ"
"ନସ୍ୱାଚନ୍ଦ୍ର ପ୍ରଶସ୍ତ"ଓ
"ମହାନ ଓଡ଼ିଶା" "ଉପଦେଶାବଳୀ"
"ଭଗବତୀ ଉସ.ମୃତାଦ" ।୪।
"ରାଧା ଦରବାର" "ଶଙ୍କର ଦେବତା"
"ମହାଭରତର ଦୁନଆଁ"
"ଭଗବତା ମାଧୁରୀ" "ଶ୍ରୀକୃଷ୍ଣ ସୁଦାମା"
"ମହାସତୀ ପଦ୍ମାଳୟା" ।୬।
ଶିଶୁଙ୍କ ସମ୍ଭାର "ଶ୍ରୀଭଗବତା ସାର"
"ମହାଭାରତ ଦର୍ପଣ"
"ଲବକୁଶ ଗୀତ" "ଯୋଜନା ଜନ୍ମେ"
"କଳ୍ପତରୁ ରାମାୟଣ" ।୭।
ଓଡ଼ିଶା ରାଜ୍ୟର ଥିଲେ ରାଜ୍ୟପାଳ
ସୁକାନ୍ତ କିଶୋର ରାୟ
ରାଜ୍ୟ ରାଜଧାନୀ ବର୍ଣ୍ଣନା କରନ୍ତି
ପ୍ରଶଂସା କଲେ ମହୋଦୟ ।୮।
ପ୍ରଶଂସା ହେବା ମାତ୍ରେ ଭରିଲା ଭୁବନରେ
ମୁଗ୍ଧ ହେଲା ତାଙ୍କ ମନ
ଧନ୍ୟ ଶଶୀଧର କାବ୍ୟ ଅଳଙ୍କାର
ଭୂମ ଲେଖା ବିଚକ୍ଷଣ ।୯।
ବର୍ଣ୍ଣନା କରନ୍ତେ ପୁରସ୍କୃତ କଲେ
ଦେଇ ଅର୍ଥ ଭୂମିଦାନ
କଳ୍ପତରୁ ରୂପେ ତୁମେ ଲଭ ଘର ତେଜ
ଲଭିପାଶ ସନମାନ ।୧୦।

କବିତା ସୃଷ୍ଟି ବର୍ଣ୍ଣନା ମାଧୁର୍ଯ୍ୟ
ଭାବ୍ୟଞ୍ଜକ ଚମତ୍କାର
ସୂର୍ଯ୍ୟ ଚନ୍ଦ୍ର ଆତ- ଯାତ ଥିବାଯାଏଁ
କୀର୍ତ୍ତି ରହିବ ଅମର ।୧୧।
ଭରତ ଜନନୀ ଶ୍ରୀଚରଣେ ନମି
ଗଣି ଲେଖିଅଛୁ ପଦ
ଦୋଷା ଦୋଷ ଥିଲେ କ୍ଷମା କରିଦେବ
ମହାନ୍ ପାଠକ ବୃନ୍ଦ ।୧୨।

❁

## ଉନ୍ନୟନ-ଯୋଜନା

ସରକାରଙ୍କର ନୂଆ ଯୋଜନା
ଦେଶବାସୀମାନଙ୍କ ପାଇଁ ସିନା ।
ପ୍ରୌଢ଼ ସମାଜ ଶିକ୍ଷା କେନ୍ଦ୍ରମାନରେ
ପଢ଼ି ଜ୍ଞାନ କରନ୍ତୁ ସକଳେ ସେ
ଦରମା ଗଣ୍ଡିକ ପାଇଁ ସେ ।
ଦୁଃଖେ ପିତାମାତା କରୁଥିଲେ ଚିନ୍ତା
ପିଲା ପଢ଼ାଇବା ପାଇଁ ସେ ।

ଦେଶରେ ରାଜେ ସର୍କାର ଯୋଜନା
ଗଢି ଦେଲେ ଇସ୍ପାତ କାରଖାନା ।
ହୀରାକୁଦ ପାରଦ୍ୱୀପ ବନ୍ଦର
ରାଜ୍ୟ ପାଇଁକ ସକଳ ପ୍ରକାର ସେ ।
କଲ୍ ଅଠାଇଶ ଜିଲ୍ଲା ସେ
ରଣକ ପାଇଁ ମାଗଣା ନ୍ୟାସ୍ନାଳୟ
ଏକଥା ଶୁଣା ନଥିଲ ସେ ।

ଗୋ ପାଳନ ମାଛ କୁକୁଡ଼ା ଚାଷ
ଗ୍ରାମେ ଗ୍ରାମେ ଜନ୍ମଡ଼ଇ ଚଳାଣ ।
ବାର୍ଦ୍ଧକ୍ୟ ବିଧବା ସଗ୍ରାମୀ ଭତ୍ତା
କୃଷି ଋଣ ଦେଇ ଦ୍ୱୋଇଲେ ଜଡା ସେ
ଏପରି ବ୍ୟବସ୍ଥାମାନ ସେ
ସମସ୍ତ ରାଜ୍ୟରେ କରଲେ ସ୍ଥାପନ
ବେତାର ଦୂରଦର୍ଶନ ସେଁ ।

ପୂର୍ବ ଭଳି ମହାମାରୀର ତାଣ୍ଡ
ଗ୍ରାମରେ ବସନ୍ତ ନ ଦିଶେ ଆଉ ।
ପଶ୍ୱା ପାଇଁ କଲେ ଡାକ୍ତରଖାନା
ସେଠାରୁ ଔଷଧ ମିଳେ ମାଗଣା ସେ
ଜନ ସଂଖ୍ୟା ହ୍ରାସ ପାଇଁ ସେ
ଜନ୍ମ ନିୟନ୍ତ୍ରଣ କଲେ ପ୍ରସାରଣ
ଗ୍ରାମ ଅଞ୍ଚଳରେ ଯାଇ ସେ ।

ଝଇଦ ସମୟେ ଆମ ସର୍କାର
କୋଟି କୋଟି ଟଙ୍କା କଣ୍ଠ ମଞ୍ଜୁର ।
ଖାଦ୍ୟ ବସ୍ତ୍ର ବାସ ନାନା ପ୍ରକାରେ
ସାହାଯ୍ୟ କଲ ନାନା ଉପାୟରେ ସେ
ଭିନ୍ନ ଭିନ୍ନ ସଂସ୍ଥାମାନ ଯେ
ସାରା ଭାରତରେ କେତେ କାର୍ଯ୍ୟକ୍ଷମ
ଦେଖି ନଥିଲୁ ନମୁନ ଯେ ।୨।

ଦେଶ ଲାଗି ହେଲେ ନାନା ଯୋଜନା
ଶିକ୍ଷା, କୃଷି, ସ୍ୱାସ୍ଥ୍ୟାଦି କାରଖାନା ।
ବାସହୀନ ଭୂମିହୀନ ବ୍ୟବସ୍ଥା
ବେକାରଙ୍କ ପାଇଁ ବ୍ଲକସ୍ଥ ସଂସ୍ଥା ସେ
ଋଣ ସୁବ୍ୟବସ୍ଥାମାନ ଯେ
ବନ୍ୟା, ଘରପୋଡ଼ି ଦୁର୍ଭିକ୍ଷ ମରୁଡ଼ି
କରନ୍ତି ଅର୍ଥ ପ୍ରଦାନ ଯେ ।୩।

ଗରିବଙ୍କୁ ଋଣ କରିଲେ ଗ୍ରାଣ୍ଟ
ବୃକ୍ଷ ରୋପଣ ରାସ୍ତା, ବନ୍ଧ ପୋଲ ।
ବର୍ଷ ସାରା ଫସଲ ଉତ୍ପାଦନ
ଜଳସେଚନାଦି ବ୍ୟବସ୍ଥା ମାନ ସେ
ବାଣ୍ଟି କୃଷୀଙ୍କୁ ବନ୍ଧନ ଯେ
ସାର ପାଇଁ କୃଷୀ ହୋଇ ଖୁସି ବାସୀ
ଗାଉଛନ୍ତି ଧନ୍ୟ ଧନ୍ୟ ଯେ ।୪।

ନୂତନ ଆଇନ କରିଲେ ଢର
ଯଉତୁକ ପ୍ରଥା ଉଠିବା ପାଇଁ ।
ନିଶା ନିବାରଣ କରି ପ୍ରବୁଦ୍ଧ
ରଖିଲେଣି ଧର୍ମବୁଦ୍ଧ ଡାକ୍ତର ସେ
ଗଢ଼ି ଅନେକ ଯୋଜନା ଯେ
ପ୍ରଜା ସୁଖ ଶାନ୍ତି ପାଇଁ ଧନ ସବୁ
କରନ୍ତି ବହୁ କଳ୍ପନା ଯେ ।୯।
ସରକାରଙ୍କ ଚାପଳ ଉଦ୍ୟତ
ଦେଶ ମହାନ କରୁ ନିସ୍ପନ୍ଦିତ
ଶାନ୍ତି ଶୃଙ୍ଖଳାରେ ନବେଶି ମନ
ମର୍ତ୍ତ୍ୟ ମଧ୍ୟରେ ସରଗ ଉତ୍ପନ୍ନ ମେ
ରେଡକ୍ରସ୍ ର ସ୍ଥାପନ
ଜନ ଜାଗରଣ ଶିଳ୍ପ ଉନ୍ନୟନ
ସଫେକ ଇନ୍ଦ୍ର ଶାସନ ।୧୦।



# ବୀରପୁତ୍ର

ଦେଶ ମାତା ଗୋ ତୋ ଯଶ ଅକ୍ଷୟ କରନ୍ତି (ଘୋଷା)
ତୋ କୋଳରେ ବସେ ଜଗତନାଥ
ଦୁର୍ଗତି ନାଶନ କରନ୍ତି ।
ଯେବେ ସେ ବିପଦ ଘଟିଲେ ଗୋ ମାତ
ଲଢ଼ାଇ କରି ଯାଉ ଜିତ
ମୁକୁନ୍ଦ ସୁରେନ୍ଦ୍ର ଗୌରବ ମହିମା
ତୋ ଯଶ ରଖିଯାଇଛନ୍ତି ।
ତାଙ୍କ ଆଦରଣ ପାଇଛୁ ସରବେ
ମନେ ନରଖି ଉପୁଜିତ
ଭାରତେ ବାପୁଜୀ ସ୍ୱାଧୀନ କରାଇ
ତୋ ଗୁଣ ଗାଇ ଯାଇଛନ୍ତି ।
ଉଦିତ ସୁବାସ ଦେଶ ପାଇଁ ଲଢି
ପ୍ରାଣ ମୁକୁଳି ଦେଇଛନ୍ତି
ଜବାହର ଲାଲ୍ ସର୍ଦ୍ଦାର ପଟେଲ
ରଖିଯାଇଛନ୍ତି ଭାରତ
ଦେଶ ଉପକାର ନମିତ୍ତ ଜୀବନ
ଉତ୍ସର୍ଜନ କରି ଅଛନ୍ତି ।
ଭାରତ ଗୌରବ ଲାଲ, ବାଲ୍, ପାଲ
ରଖିଲେ ଅକ୍ଷୟ ଭାରତ
ଏମାନେ ମାତାର ସୁଯୋଗ୍ୟ ସନ୍ତାନ
ଚିର ସ୍ମରଣୀୟ ହୁଅନ୍ତି ।
ଭାରତ ମାତାର ଶ୍ରେଷ୍ଠ ଜ୍ଞାନପୁଞ୍ଜ
ଅରକ୍ଷିତ ବାବୁ ଅଟନ୍ତି
ଜନମ ଲଭିଣ ନୟାଗଡ଼ ମଧ୍ୟେ
ଓଡ଼ିଶା ଟେକ ରଖିଛନ୍ତି ।

ଆଉନ କବିଲକ   ପଞ୍ଚସ୍ଥାଟା ଭାବେ
ଭନ୍ତି ଦେଶର ଜନ୍ମତ
ପୁଣ୍ୟ ନସ୍ଥାଗଣ   ହୋଇଅଛୁ ବନ୍ତ
ଧନ୍ୟ ଅରକ୍ଷିତ ଭାରତ ।



## ଓଡ଼ିଆ ପରକେ ହୋଇବ

ଦେଶ ମାତା ଗୋ   ଓଡ଼ିଆ ପରକେ ହୋଇବ
ପଞ୍ଚଶ ଭରତେ   ବଢେ ଜଗନ୍ନାଥ
ସାଗ୍ର ଜଗତର ଗରବ
ଇନ୍ଦ୍ରଦ୍ୟୁମ୍ନ ଭାର   କୀର୍ତ୍ତି ଶ୍ରୀମନ୍ଦିର
ବଢ଼ାଇଲେ ଦେଶ ବିଭବ ।୦।
ଶ୍ରୀ ନନ୍ଦବଟନ୍ତ୍ର ଅ-   ନଙ୍ଗ ପପାଙ୍କେ
ପରକେ ବିକ୍ରୁତ ଭଇବ
ପ୍ରାଚୀନ ଭାରତ   ସଂସ୍କୃତ ସନ୍ତତ
କଏ ସମତୁଲ ହୋଇବ ? ।୧।
ବୀର କରଷର   ବାଢ୍ରତ ଧର୍ମା
ଆଦରଣ କଏ ନୋହିବ
ବାଲ୍ମୀକି ବ୍ୟାସ   ମାବ କାଳିଦାସ
ପରକେ ପାଣ୍ଡିତ୍ୟ କରିବ ।୨।

ଶଙ୍କରାଚାର୍ଯ୍ୟ ନା- ନକ ରାମାନୁଜ
ଦେଶରେ ଆଉଣ ଉଠିବ
ବୁଦ୍ଧ ଚାଣକ୍ୟଙ୍କ ଶ୍ରୀ ବିବେକାନନ୍ଦ
ଆଦର୍ଶ ଜ୍ଞାନକେ ଲଭିବ ।୩।
ଶାହାଜାହାନଙ୍କ ଚଣ୍ଡ କେଉଁଝରା
ମୋଗଲ ସତ୍ତାକୁ ସ୍ଥାପିବ
ଲାଲବାହାଦୁର ଶ୍ରୀ ଅମ୍ବେଦକର
ସମ୍ବିଧାନକୁ କେ ଗଢ଼ିବ ।୪।
ଗାନ୍ଧୀ ଜବାହାର ସୁବାଷ ପଟେଲ
କଏ ସ୍ୱାଧୀନତା ଆଣିବ
ଭଞ୍ଜ କଳାକାର ବୁଦ୍ଧ ଚନ୍ଦ୍ରକଳା
ଭାରତ ପଣକେ ହୋଇବ ।୫।
ସତ୍ୟ ଅହିଂସାର ସଂଗ୍ରାମୀ ହୋଇକେ
ଦେଶକୁ ଗୋରା ହଟାଇବ
ଏପରି କେ ଆଉ ଜଗତରେ ଅଛୁ
ଗୋରାଙ୍କୁ ସାବାଡ଼ କରିବ ।୬।
କେମ୍ୟାଡ ଷଷାରତ ପଠାଣି ସାମନ୍ତ
ତଣିକେ ଆକାଶ ମାପିବ
ଗଡ଼ ଷଧ ଦେଖି ଲେଖି ଯାଉଅଛୁ
ଶକ୍ତି କା'ର ଅଛୁ କଣ୍ଡିବ ।୭।
ଘରରେ ରହିଛି ସକଳ ପ୍ରକାର
ଅକଳନ ଧାତୁ ରତନ
ଫଳ ମୂଳ ଫୁଲ ମିଳଇ ପ୍ରଚୁର
ଭରତରେ କେଉଁଠି ନଥିବ ।୮।

ଗର୍ବେ ଅଠାବନ ଦେଶେ ଉଚସ୍ଥାନ
ଭାରତ କେ ଜଣ ପାଇବ
ଖାଦ୍ୟ ସ୍ୱୟଂସମ୍ପନ୍ନ ଭାରତ ଜନଗଣ
ଗୌରବରେ ହସି ଉଠିବ ।୯।
ଭାରତ ମାତାର ପଦ ଧୌତ କରି
କେତେଜଣ ଧନ୍ୟ ହୋଇବ
ବନ୍ଧୁ ଦରବାରେ ଖାଦ୍ୟ ସନ୍ତାନଙ୍କୁ
ଜୀବନେ ଭୁଲି ନପାରିବ ।୧୦।



## ପରିବାର ନିୟନ୍ତ୍ରଣ

ପ୍ରାଣ ସଙ୍ଗୀ ଗୋ ଶୁଣ ତୁମେ ମୋର କଥାକୁ
ପ୍ରାନ୍ତର ପଥର ଦେଲେ ସୀମା ପର
ତଣରି ଦୂର ସଂସାରକୁ
ନାହିଁ ଅବସର ଜୀବନେ ତୁମର
ଧରି ବସ୍ତ ପରିବାରକୁ
ଶ୍ରେଷ୍ଠ ପରିବାର ଶାନ୍ତିର ଆଳୟ
ମାନ ମୋର ଏବେ କଥାକୁ
ଅଧିକ ସନ୍ତାନ ହୋଇଲେ ଜନମ
ଭୋଗିବ ଅଧିକ କ୍ଲେଶକୁ

ଦେଶେ ଉତ୍ପାଦିତ ଖାଦ୍ୟ ଶସ୍ୟ ଯେତେ
ତା ଠାରୁ ଅଧିକ ଜନକୁ
ଜନ-ମିଳେ ଦେଶେ ସୀମିତ ସମ୍ବଳେ
ହାନକର ହୁଏ ସ୍ୱାସ୍ଥ୍ୟକୁ

ଦୁଇଗୋଟି ଛୁଆ ହୋଇଲେ ଜନମ
କରିବଟି ନିୟନ୍ତ୍ରଣକୁ

ନ କର ଅବୋଧ ଗରଭ ନିରୋଧ
ନିୟନ୍ତ୍ରଣ ଜନସଂଖ୍ୟାକୁ
ବଡ଼ ପରିବାର ଧରି ଦାରିଖାର
ଦୁଃଖେ କଟାଇବ ଦିନକୁ

ହେଲ ଥାଅ ଭଲେ ଜନ୍ମ ନିୟନ୍ତ୍ରଣ
ଦୂର ହୋଇଯିବ ଦୁଃଖକୁ
ମିଛ ମାୟାଭବ ଅଟଇ ସଂସାର
କେହି ନୁହନ୍ତି ଆପଣାକୁ

ଅଧିକ ସନ୍ତାନ କରିଣ ଜନମ
ଦୁଃଖ ଭୋଗିବ ଜୀବନକୁ
ବଂଶ ରକ୍ଷା ପାଇଁ ଦୁଇଟି ସନ୍ତାନ
ଯଥେଷ୍ଟ ଏ ଧରା ତଳକୁ

ପୁଅ ହେଉ କନ୍ୟା ଝିଅ ହେଉ ପଛେ
ଦୁଃଖ ନକର ଅନ୍ତରକୁ
ଗୋଟିଏ ଚନ୍ଦ୍ରମା ସାରା ପୃଥିବୀକୁ
କରୁଥାଏ ଆଲୋକିତକୁ

ଛୋଟି ଛୋଟି ତାରା    ଉଜ୍ୱଳ ଆକାଶେ
ଘୋଟୁଥାଏ ଅନ୍ଧକାରକୁ
ଗୋଟିଏ ସନ୍ତାନ    କରଣ ଜନମ
ସୁଯୋଗ୍ୟ କଲେ ମାନବକୁ
ସାର୍ଥକ ହୋଇବ    ଜୀବନ କୁମର
ଯଶଥିବ  କାଳ  କାଳକୁ

## ଯୌତୁକ ଏକ ସାମାଜିକ ବ୍ୟାଧି

ପ୍ରଧାନଙ୍କ ଝିଅ ସୁନନ୍ଦା ଚଉଧୁରୀ, ଏମ୍. ଏ. ପାସକରି
ଫରେନଫାଠକୁ ଗତି ଆସିଅଛି, କହିବାପାଇଁ ସ୍ୱଜନ
ସୁଶିକ୍ଷିତା କନ୍ୟାପାଇଁ ପିତାମାତା ଏକନଗର ଧାଇଁ ଧାଇଁ
ଶୁଣିପାଇ ପଡନ୍ତିଲେ ବନ୍ଧୁ ଘରେ, ଉପଯୁକ୍ତ ବରପାଇଁ ।୧।
ବରପିତାଦାବି ପଚ୍ଚିଶ ହଜାର ସୁନା ଷୋଳଭରି ଅଙ୍ଗେ
ସ୍କୁଟର ସାଙ୍ଗକୁ, ଫ୍ରିଜ୍‌ଟିଏ ଲେଡ଼ା ରଙ୍ଗୀନ୍ ଟିଭିଟି ସଙ୍ଗେ ।୧।
ବମ୍ବେଇପାଟନ୍ ଖଟ ସୋଫାସେଟ୍ ଦେବ କ୍ରମେ ଯଥାଯଥ
ବଣ୍ଟା, ମୁଦପାଟ କରି ଏକଜୁଟ ଥିବ ଅନ୍ୟାନ୍ୟ ପଦାର୍ଥ ।୩।
ସେନେଟେଡ୍ ପୁଅ, ଗୋଟେ ବୋଲମୋର, ନକରିଲେ ସନମାନ
ସାଙ୍ଗସାଥିମାନେ, ପରିହାସ କରି, ଦେଖିବେ ସେ ହୀନମାନ ।୪।

କନ୍ୟାପିତା:—

ଯଉତୁକ ଦାବୀ ନକର ସମ୍ମୁଖ ଝୁକିପାରୁଅଛୁ ମଥା
ସକଳ ସମ୍ପତ୍ତି ଯାଉଅଛି ଝିଅ ପଢ଼ାପାଇଁ ନୁହେଁ ମିଥ୍ୟା ।୫।
ଉପାର୍ଜନକ୍ଷମ ଶିକ୍ଷିତ ମୋ ଝିଅ ତୁମକୁ ନଦେବ ଦୁଃଖ
ମନଜାଣି ତୁମ ଘରକୁ ବୁଝିବ ରଖି ସ୍ନେହ ଭାବ ସୁଖ ।୬।

ବରପିତା:—

ସୁନ୍ଦରୀ ଶିକ୍ଷିତା ବୋହୂରେ ମୋହର କେଉଁ ଗଉରବ ଅବା
ଗୃକଣ୍ଣଅଝିଅ ବୋହୂ କରିନେଲେ ମଚେଇ ଭଲବ ସେବା ।୭।
ବାବୁଆଣୀଡ଼ାକ ଶୁଣିବା ପାଇଁ କି ମନରେ ଭାରି ସଉକ
ଘରୁ ସ୍କୁଲଯାଇ ଟିଉସ୍ତ ପାଖରେ ଦେଖାଇଦେବ ଢମାକ ।୮।

ବୋହୂ ପାଖେ ଯେତ ଗୁଣ ରହିଅଛି
ଯଉତୁକ ଅଟେ ତୁଚ୍ଛ
ପରକୁ ଆପଣା କରିପାରେ ଯିଏ
ବୋହୂ ମଧ୍ୟେ ହୁଏ ଶ୍ରେଷ୍ଠ
ସାମାଜିକ ବ୍ୟାଧି ଯଉତୁକ ପ୍ରଥା
ଦେଶ ପାଇଁ ନୁହେଁ ଭଲ
ସମୃଦ୍ଧ ଭାବରେ କରଣ ସଂଗ୍ରାମ
ପାଇବା ଏହାର ମୂଲ୍ୟ
ଯଉତୁକ ପ୍ରଥା ଉଠିଲେ ଦେଶରୁ
ଦେଶ ଆଦର୍ଶ ଲଭିବ
ସାରା ପୃଥିବୀରେ ପ୍ରଶଂସିତ ହେବ
ମୋ ଦେଶର ଗଉରବ

ହଉତର ଗୃହ୍ଣତନ୍ତ୍ରକଳା ଶୋଭା ଙ୍କଟକେ ମହିମା ଚଣିଆ
ଭାରତମାତାର ମହିମାଅପାର ଲଟେ ଖାଣ ଗୁନଅଁ ।୫
ପୂଛବୁ ଲକ୍ଷ୍ମୀ ଭାରତ ବଖ୍ୟାତ ଏ ହନ୍ୟାନ ସିଂହର ଚୁଆ
ଭାରତ ନଦତ ନଜାଣିକେ ଛୁଞ୍ଚି ସୁବ୍ରତିଙ୍କ ସାବ ଦୂଦଥା ।୬
ଆଜଯାଏ ମୂର୍ତ୍ତି ନୁଅଇଁ ନାହିଁରେ ଏ ଦେଶ ମହତ ଚଣିଆ
ବଶୁଦରବାରେ ରଖି ଯଶ କର୍ଗି ନଥା ଟେକ ଅଛି ଉଡ଼ୁଆ ।୭
ଶତେ ଅଠାବନ ଦେଶରେ ଭାରତ
ଦୋଳନାହିଁ କେବେ ଚନ୍ଦ୍ରୁଆ
ଏ ଦେଶ ଗଗନେ ଜନ୍ତର କୃରଙ୍ଗା
ଦେଶ ଶୋଭା କେଡ଼େ ବଢିଆ



## ନିଶା ନିବାରଣ

ଭାରତ ମାତାର ଶ୍ରେଷ୍ଠ ପିଲା
କି ଶୁଭ ଯୋଗେ ଜନମିଲା
କି ଶୁଭ ବେଳାରେ ଜନ୍ମ ଗଢ଼ିଥିଲା
କେତେ ବଡ଼ ବୁଦ୍ଧିମାନ ହେଲା
ବିଲାତରେ ପାଠ ଶେଷ କଲା
ଭାରତକୁ ସେ ଫେରି ଆସିଲା
ଶିକ୍ଷା ଲାଭକରି ବଡ଼ ହେଲା ହେବି
ଦେଶ ସେବା ମନ ବଳାଇଲା
ସରକାରଙ୍କ ଆଦେଶ ହେଲା
ପୃଥିବୀ ଭ୍ରମଣ ପାଇଁ ଚଲା
ଆଇନ ପ୍ରସିଦ୍ଧ ବିଧି ବିଶାରଦ
ପଦ ପଦବୀକୁ ପ୍ରାପ୍ତ କଲା
ନିଶା ନିବାରଣ ସମ୍ବନ୍ଧରେ
ବହୁ ଆଲୋଚନା ଯାଇ କଲା
ଜ୍ଞାନବାନ ପରୀକ୍ଷିତ ପ୍ରଭୁରାଜ
ସର୍ବଗୁଣେ ପରିଚିତ ହେଲା
ନିଶାଗ୍ରସ୍ତ ଦୁଃଖ ନସକ୍ଷଲା
ସରକାରଙ୍କୁ ସେ ଜଣାଇଲା
ବେକାରମାନଙ୍କୁ ସୁଧାରିବା ପାଇଁ
ସ୍ବଜନ ପାଇଁ କେତେ ଲଢ଼ିଲା
ନିସ୍ବାର୍ଥେ ବହୁ ଚେଷ୍ଟା କରି
ଆଉ ଏକ ସଭା ଖୋଲିଦେଲା
ନିଶା ନିବାରଣ କେନ୍ଦ୍ରକୁ ଗଢ଼ିଣ
"ଭରସା" ତାହାର ନାମ ଦେଲା

ନୟାଗଡ଼େ ଜନ୍ମ ଲଭିଥିଲ
କେତେ ବଡ଼ କର୍ମବୀର ହେଲ
ତୁମ୍ପି ଉଠେ ଦେଶ ହସଇ ଗଗନ
ବଡ ହୋଇ ଦେଶେ କ ନ ନିଲ
କେତେ ଉକଳଙ୍କୁ ଗଢ଼ିଦେଲ
କେତେ ଶଶାରଦ ଉଆରଲ
ଆଇନ ପାଠରେ ହୋଇ ଶଣାରଦ
ଭାହାକୁ ଖାତର୍ ନକରିଲ
ନିଃସ୍ୱହାୟ ଲୋକଙ୍କ ମାମଲ
ଆଇନ ଦେଖାଇ ଜିତାଇଲ
ସତ୍ୟ ନ୍ୟାୟ ଧର୍ମ ସଭଙ୍କ ପାଇଁକ
ଉନ୍ନତର ପଥ ଖୋଲିଦେଲ
ନିଶା ଦ୍ରବ୍ୟମାନ ବନ୍ଦକଲ
ଲୋକଙ୍କୁ ଯାଇ ସେ ବୁଝାଇଲ
ତାର ଉପଦେଶ ଶୁଣିଲ ସମାଜ
ଝଣା ଛୁଇଁକି ଟେଟେଇଲେ
ଦେଶେ ବିଦେଶ ଯାଇ ଯୁଝିଲ
ଦିବ୍ୟଜ୍ଞାନ କର୍ଣ୍ଣୀ ଅରଜିଲ
କୋଟି ଜନତାର ପ୍ରିୟ ଅରକ୍ଷିତ
ଦେଶର ବନ୍ଧୁ ଉନ୍ନତ କଲ
ନିଶା ନିବାରଣ ସେତୁ କଲ
କୋଟି କୋଟି ଜନ ସୁଛାରଲ
ତାଙ୍କ ଗୁଣ ଯଶ ଘୋଷଇ ଜଗତ
ଦୁନିଆରେ ବଡ଼ କୋଲ୍‌ଇଲ ।

●

## କବିଙ୍କ ଦ୍ୱାରା ପ୍ରକାଶିତ ପୁସ୍ତକ—

ମହାନ୍ ଓଡ଼ିଶା

ଉମା ପରିଣୟ

ନୟାଗଡ଼ ପ୍ରତିଭା

କବିତା ରସାମୃତ

ମହିମାମୟୀ ମା ଦକ୍ଷିଣେ କାଳୀ

ଉପଦେଶାବଳୀ

ବିଚିତ୍ର ଦୁନିଆଁ

## ପ୍ରକାଶ ଅପେକ୍ଷାରେ—

ସୁଧା ଦରବାର

ଶବର ଦେବତା

ମାତା ପଦ୍ମାଳୟା

ମହାସତୀ ସାବିତ୍ରୀ

କୃଷ୍ଣସୁଦାମା

ଲବକୁଶ

କବିତା ମାଧୁରୀ

ସରକାରଙ୍କ ଯୋଜନା

ଜୀବନ ରସାମୃତ

କବିତା ସାର

ଶିଶୁ କବିତା

ମହାସତୀ ଜାନକୀ

